# ବାଘ ଘରେ ହରିଣ ନାଚ



# ବାଘ ଘରେ ମିରିଗ ନାଟ

ଲେଖକ :
ଶ୍ରୀ ଭୁଜମଣି ମହାପାତ୍ର
ଅଧ୍ୟାପକ, ରାଜେନ୍ଦ୍ର କଲେଜ
ବଲାଙ୍ଗୀର

ପ୍ରକାଶକ :
ଜେ. ମହାପାତ୍ର ଏଣ୍ଡ କୋ.
ଗ୍ରନ୍ଥସାଥି ଅଫିସ, କଟକ-୨

ମୂଲ୍ୟ ଟ ୧-୫୦

# ଗଳ୍ପସୂଚୀ

ବିଷୟ | ପୃଷ୍ଠା



---




ଗାଉଁ ଗାଉଁ ହୋଇ ଶଂଖୀ ବିଲେଇ ତା ଡାହାଣ ପାପୁଲିରେ ଆପଣା ଥୋଡ଼ିଟାକୁ ଘଷି ପକାଇଲା । ଏଣେ କିନ୍ତୁ ନଜର ଥାଏ ଅମୂଲ୍ୟ ଆଡ଼େ । ଡେଙ୍ଗାଗୋଡ଼ିଆ ଦି ଖେପାକେ ଆସି ଧରି ପକେଇବ । ଶଂଖୀ କେଟିକିଆଣୀ । ତାକୁ ଏ ଛାର ଅମୂଲ୍ୟ ଧରି ପକେଇବ ? ଅମୂଲ୍ୟ ତାକୁ ଜିଭ ଦେଖାଇ କହିଲା, ଉଁଃ । ଭାରି ବିଲେଇଟା ତ - ଆଉ ଯେମିତି ଦୁନିଆରେ ଏହାପରି ବିଲେଇ ନାହାନ୍ତି । ଶଂଖୀ କହିଲା, ଉଆଁ ଉଁ ଗାଉଁ ଗାଉଁ ଅର୍ଥାତ୍ ମୋ'ପରି ଗୋଟାଏ ବିଲେଇ ଆଣିଲୁ ଦେଖି ? ଫୁଟାଣିଆ ।

ଅମୂଲ୍ୟ କାନ କୁଣ୍ଡେଇ କୁଣ୍ଡେଇ ଭାବିଲା ବଡ଼ ଆଶ୍ଚର୍ଯ୍ୟ କଥା – ସାର୍ ଗୋଟାଏ ବିଲେଇ ଆଣିବାକୁ କହିଲେ କାହିଁକି ? ସେ କଣ ବିଲେଇ ଖାଆନ୍ତି ? ହୋଇଥିବ । ଆଈ କହୁଥିଲା ସବାଖିଆଗୁଡ଼ାକ ବିଲେଇ ଖାଆନ୍ତି । ତେବେ ଆମ ସାର୍ କଣ ସବାଖିଆ ? ଛି ଛି, ସେ ଏ କଣ ଭାବୁଛି । ବୋଧହୁଏ, ବିଲେଇଟିଏ ପୋଷିବାକୁ ଚାହୁଁଥିବେ । ଛାଡ଼ ସେ କଥାରୁ ଆମକୁ କଣ ମିଳିବ । ଆମେ ଆମ କାମ କରିଦେବା । ତେଣିକି ସେ ପାଳନ୍ତୁ କି ପୋଡ଼ିଖାଆନ୍ତୁ ।

ଧଡ଼ାସ କରି ଗୋଟାଏ ଶବ୍ଦ ହେଲା । କଥା କଣ ? ଶଂଖୀ ଗୋଟାଏ ଶିକାର ପାଇଗଲା । ବାଃ କି ନାଚ । ବଢ଼ିଆ ମଜାରେ ତ ଡେଉଁଛି । ଗଲା ଗଲା ଗଲା । ଆହାହା ! ବିଚରା ଅସରପାଟି ମରିଗଲା । ଅମୂଲ୍ୟ ଭାବିଲା ଏଇ ହେଉଛି ବେଳ ।

ଚୁପ୍ ଚୁପ୍ ଯାଇ ଚଟ୍ କରି ଶଂଖୀର ଲାଞ୍ଜକୁ ଧରି ପକାଇଲା, ଇଲ୍ଲି, ଏଥର ଯିବୁ କୁଆଡ଼େ । ମାତ୍ର ଏଇ ଝିକଜ ବିପଦରେ ଶଂଖୀ ଡରିଯିବା ପିଲା ନୁହେଁ, ଫାଉଁ କରି ଓଲଟିପଡ଼ି ଜଣକୁ ଠିଆ ଠିଆ କରିଦେଇ ଗୋଜିଆ ଗୋଜିଆ ଦାନ୍ତକୁ ଦେଖାଇ ମୁନିଆଁ ନଖରେ ଅମୂଲ୍ୟ ମୁହଁକୁ ଆମ୍ପୁଡ଼ି ପକାଇଲା । ଦ'ଟା ନଖ ତା ଗାଲରେ ଗଳିଗଲା । ମୋ ବୋପାଲୋ କହି ଅମୂଲ୍ୟ ଶଂଖୀ ଲାଙ୍ଗୁଳକୁ ଛାଡ଼ି ଦ'ହାତ ପଛକୁ ଡେଇଁ ପଡ଼ିଲା । ଶଂଖୀ ଯାଇ ଚୂଳି ଉପରେ । ମ୍ୟାଉଁ ମ୍ୟାଉଁ, ହୁଁଉଁ ହୁଁଉଁ, ଗୁଡ଼ୁ ଗୁଡ଼ୁ ଗୁଡ଼ୁ । ଅର୍ଥାତ୍ ତୁ ନା, ତୋ ପରି ହଜାରେ । ମୋତେ ଧରିବୁ ? ଏତେ ସାହସ ? ଆଉ ଥରେ ଯଦି ଆସୁ, ତୋ କାନକୁ ଧରି ଦେବି କାମୁଡ଼ି । ପୋଡ଼ୁଥିବ ହୁ ହୁ ହୋଇ । ମନେ ପକାଉ-ଥିବୁ ରେ ପୁଅ । ଚିହ୍ନି ନାହୁଁ —ମୋ ନାଁଟି ଶଂଖୀ ।

ଅମୂଲ୍ୟର ଜିଦ୍ ବଢ଼ିଗଲା । ଯେ କୌଣସି ମତେ ଧରିବାକୁ ହେବ—ଛାରି ବିରେଇଟା, ଜିତିଯିବ ? ସାର୍ କହନ୍ତି, ଆଗେ କେତେ ଭଲ ପିଲା ଥିଲେ । ଏ କାଳର ପିଲାଗୁଡ଼ାକ ଗୁରୁଙ୍କୁ ମାନୁ ନାହାନ୍ତି । ଯାହା ଗୋଟାଏ କାମ କହିଲେ ମୋଟେ କରୁନାହାନ୍ତି । ହେଲେ ଉପାୟ କଣ ? ଅମୂଲ୍ୟ ମୁଣ୍ଡ କୁଣ୍ଡାଇଲା । ତା ମୁଣ୍ଡର ପଛ ଆଡ଼କୁ ଦପୁଳା ଚନ୍ଦା ହୋଇଛି । ଟେପଜ ପଡ଼ି ପୋଡ଼ି ଯାଇଥିଲା । ଆଉ ବାଳ ଉଠୁନାହିଁ । ସେଇ ଚନ୍ଦା ଜାଗାଟାକୁ ଆଉଁସି ଦେଲେ ତାହାର ବୁଦ୍ଧି ବାହାରିପଡ଼େ । ଅମୂଲ୍ୟ ସେଇ ଜାଗାଟିକୁ ଟିକିଏ ସଲ ସଲ କରିଦେଲା । ବାହାରିଲା ବୁଦ୍ଧି । ପାଖରେ ଥୁଆ ହୋଇଥିଲା ଗୋଟାଏ ଟୋକେଇ । ରହିଲେ ଶଂଖୀ, ଏଥର ଯିବୁ କୁଆଡ଼େ ? ସେତେବେଳକୁ ଶଂଖୀ ଗୋଡ଼ ହାତ ଚିରିକାଟ ମେଲେଇ ପଡ଼ିଥାଏ । ଗୁଡ଼ାଖୁ ଖାଇଲାପରି ଗୁଡ଼ୁ ଗୁଡ଼ୁ ଘୁଟ୍ ହେଉଥାଏ । ଅମୂଲ୍ୟକୁ ଆମ୍ପୁଡ଼ା ଦେଇ ତା ମନ ଖୁସି । ସେ ବର୍ତ୍ତମାନ ନିରାପଦ । ମାରୁଆଡ଼ିପରି ପେଟକୁ କାଢ଼ିଦେଇ ଗୋଡ଼ଗୁଡ଼ାକ ଚିରିଟି ପକାଉଥାଏ । ଭକ୍ତମାନେ ହରିନାମ କରି ବେଳେ ବେଳେ ଆଖି ବୁଜି ପକାଇଲା ପରି ଡୋଳାକୁ ବନ୍ଦ କରି ଦେଉଥାଏ ।

ଧଡ଼ାସ୍ । ଖଡ଼ର ଖଡ଼ର । ଗାମ୍ପୁ ଗାମ୍ପୁ । କ୍ୟାଉଁ । ଆଉ କାହୁଁ ଥାଏ । ଟୋକେଇ ଭିତରେ ଖବର ଖବର ହୋଇ ଶଂଖୀ ବୁଲି ଚାରି ଘେରି ବୁଲିଆସିଲା । ହାୟ, ସେ ଯେ ବନ୍ଦୀ । ଶତ୍ରୁ ତାକୁ ଅତର୍କିତ ଭାବରେ ଆକ୍ରମଣ

କର ବନ୍ଦୀ କରଛ । ଅମୂଲ୍ୟ ଆମ୍ପୁଡ଼ା ଖାଇଲା ସିନା, ଶେଷକୁ କିନ୍ତୁ ଜିତିଗଲା ।

ତା'ପରେ ଆସିଲେ ବାବୁ କୁନା, ପାକ, ଜଟିଆ, ରମେଶ, ବାବୁଲ, ଟୁକୁ, ସନ୍ତୋଷ, ଅଞ୍ଜନ, ରଞ୍ଜନ, ଟୁନା ଆଉ ଶ୍ୟାମ । ବହୁ କଷ୍ଟରେ ଶଂଖୀକୁ ବନ୍ଧାଗଲା । ଏଣିକି କେଉଁ ଦ୍ୱୀପାନ୍ତର ଦଣ୍ଡ ହେବ କେଜାଣି । ସମସ୍ତେ ଚାଲିଲେ ସାର୍‌ଙ୍କ ଘରଆଡ଼େ । ଆଗରେ ଯାଉଥାଏ ଅମୂଲ୍ୟ । ସେ ହେଉଛି ସେନାପତି । ତା ପଛକୁ ତା ପଛକୁ ସୈନ୍ୟଦଳ ଆଗେଇ ଚାଲିଲେ ।



ସାର୍ ହଠାତ୍ ଦେଖି ପକାଇଲେ । ଏଁ ? କିରେ ବିଲେଇଟାକୁ କାହିଁକି ବାନ୍ଧି ଆଣିଛ । କଥା କଣ, ଛି ଛି, ଇଏ କି ଦୁଷ୍ଟାମି । ଅମୂଲ୍ୟକୁ ମନେହେଲା, ତା ଗୋଡ଼ତଳୁ ସତେ ଯେପରି ଭୂଇଁଟା ତଳକୁ ତଳକୁ ଖସି ଯାଉଛି । ତା କାନମୁଣ୍ଡା ଭାଁ ଭାଁ ହୋଇଗଲା । କେତେ ସୁନ୍ଦର ବିଲେଇଟିଏ ଆଣିଛୁ । ପ୍ରଶଂସା ପାଇବ କଣ ଓଲଟି ଗାଳି ହେଲାଣି । ସାର୍ ପଚାରିଲେ କିରେ ଅମୂଲ୍ୟ କଥା କଣ କହ । ତୁ ତ ଖୁବ୍ ଭଲପିଲା । କଣ ହେଲା । ଅମୂଲ୍ୟ ଅଟେଙ୍ଗେଇ

ଅଟେଙ୍ଗଇ ହୋଇ କହିଲା ସାର୍, ଆପଣ କହିଥିଲେ ବିଲେଇ ଆଣିବାକୁ । ବହୁତ କଷ୍ଟରେ ତାକୁ ଧରି ଆଣିଛି । ହାଃ ହାଃ ହାଃ ହାଃ, ହୋ ହୋ ହୋ, ହି ହି ହି ହି ହି । ସାର୍ ତ ହସି ହସି ଥୟ୍ୟା, ସେଠି ଆଉ କେତେ ଜଣ ବସିଥିଲେ ସେମାନେ ବି ହସି ହସି ଗଡ଼ିଲେଣି । ସୈନ୍ୟ ଦଳରୁ ଗୋଟିଏ ଗୋଟିଏ ପଛରୁ ପଛରୁ ଛତ୍ରଭଙ୍ଗ ଦେଇ ପଳାୟନ କଲେଣି । ସାର୍ ବୁଝାଇଲେ ଶୁଣ୍ ରେ ହୁଣ୍ଡା, ଆମର ବାଲ୍‌ଟିଟା କୂଅରେ ଗଳିପଡ଼ିଛି ଯେ, ତାକୁ କାଢ଼ିବାପାଇଁ କୂଅ ବିଲେଇଟା ଆଣିବାକୁ କହିଥିଲି । କୂଅ କଣ୍ଟା, ସତକୁ ସତ ବିଲେଇ ନୁହେଁ ।

ଅମୂଲ୍ୟ ପିଠିରେ ହାତମାରି ତାରିଫ୍ କରି କହିଲେ ଯା ଯା ଘରି ଭଲପିଲା । ମୋ ପାଇଁ ଖୁବ୍ କଷ୍ଟ ସହି କାମଟା କରିଛୁ । ତୋର କିଛି ଦୋଷ ନାହିଁ । ତୁ ଖୁବ ଭଲ ପିଲା । ସେତେବେଳକୁ ଅମୂଲ୍ୟର ମୁଣ୍ଡଟା ଏତେ ବଡ଼ ହୋଇ ଯାଇଥାଏ । ବଡ଼ ଅପମାନିଆ ଲାଗୁଥାଏ । ସାର୍ ବୁଝାଇଲେ, ତୋ କଷ୍ଟକୁ ମୁଁ ତାରିଫ୍ କରୁଛି । ମାତ୍ର ଏତେଗୁଡ଼ାଏ ପରିଶ୍ରମ ବୃଥାରେ ଚାଲିଗଲା । ତେବେ ଏତିକି ମନେରଖ, ଯାହା କରିବ ବୁଝି ବିଚାରି କରିବ । ତରତର ହୋଇ କଲେ ସବୁ ପରିଶ୍ରମ ବୃଥା ହୋଇଯିବାର ଭୟ ରହିଛି ।

ଅମୂଲ୍ୟ ସେହିପରି ତଳକୁ ମୁହଁପୋତି ଠିଆ ହୋଇଥାଏ । ସାର୍ ବହୁତ ବୁଝାଇଲା ପରେ ମୁଣ୍ଡ କୁଣ୍ଡେଇ କୁଣ୍ଡେଇ ଘରକୁ ଫେରିଲା ।






ସପ୍ତଶଯ୍ୟା ପାହାଡରେ ଅନେକ ଭାଲୁ ଥିଲେ । ଅନ୍ୟ ପଶୁମାନଙ୍କ ଅପେକ୍ଷା ସେମାନେ ଅଧିକ ଚତୁର ଥିଲେ । ସେମାନେ ମଝିରେ ମଝିରେ ସଭା କରୁଥିଲେ । କେହି କେହି ବକ୍ତୃତାମାନ ଦେଉଥିଲେ । ଏମାନଙ୍କୁ ଶିକ୍ଷିତ ପଶୁ କହିଲେ ଚଳେ ।

ଥରେ ଗୋଟାଏ ଟୋକା ଭାଲୁ ସଭାରେ ଠିଆ ହୋଇ ହାତ ଯୋଡ଼ି କହିଲା, "ଭଦ୍ର ମହୋଦୟଗଣ, ଆଜି ମୁଁ ଆପଣମାନଙ୍କୁ ଗୋଟିଏ ନୂଆ କଥା କହିବି । କାଲି ସନ୍ଧ୍ୟାବେଳେ ଦଳେ ଟୋକା ହାଉଆ ଖାଇ ଯାଇଥିଲୁ । ଯାଉ ଯାଉ ଗୋଟାଏ ମଣିଷ ବସ୍ତି ପାଖରେ ପହଞ୍ଚିଗଲୁ । ସେ ଗାଁଟା ନାଁ ପାଞ୍ଚିଣପୁର । ସେଠି ବହୁତ ଧାର୍ମିକ ଲୋକ ଅଛନ୍ତି । ସମସ୍ତେ ହରିନାମ ନେଉଛନ୍ତି, ଏ ଜୀବନରେ ଯଦି ହରିନାମ ନେଇ ଟିକିଏ କୀର୍ତ୍ତନ କରି ନ ପାରିଲୁ, ତେବେ ଏ ପବିତ୍ର ଭାଲୁ ଜନ୍ମପାଇ ଲାଭ କଣ ।" ସମସ୍ତଙ୍କ ମନକୁ ଚଟ୍ କରି କଥାଟା ପାଇଗଲା । ସମସ୍ତେ ଖୁସିରେ ତାଳିମାରି କହିଲେ ଅବଶ୍ୟ ଅବଶ୍ୟ । ହଠାତ୍ ଜଣେ ଦରବୁଢ଼ା ଭାଲୁ ଠିଆ ହୋଇ କହିଲା, ଆଚ୍ଛା ଭଲ କଥା — କୀର୍ତ୍ତନ ହେବ । ଆମ୍ଭେମାନେ ବି ମତ ଦେଉଛୁ । ମାତ୍ର ମଣିଷମାନଙ୍କ ପରି ମୃଦଙ୍ଗ, ଝାଞ୍ଜ ପାଇବୁ କେଉଁଠୁ ? ବିନା ମୃଦଙ୍ଗରେ କୀର୍ତ୍ତନ ହେବ କିପରି ?

ସମସ୍ତଙ୍କ ମୁହଁ ଶୁଖିଗଲା । କୀର୍ତ୍ତନ ନା କୀର୍ତ୍ତନ । ଏକଥା ତ କାହା ମୁଣ୍ଡରେ ଜୁଟି ନ ଥିଲା ? ଇଏ ତା ମୁହଁକୁ ସିଏ ୟା ମୁହଁକୁ ଚାହିଁଲା । ଶେଷକୁ ଜଣେ ତୋଡ଼ମୁହାଁ ଭାଲୁ କହିଲା, ଭାଇମାନେ ଚିନ୍ତା କର ନାହିଁ । ମନଥିଲେ ଉପାୟ ବାଟ ଆସେ । ଆମ ଭିତରୁ ଦଶ କୋଡ଼ିଏଟା ଟୋକା ବାହାରନ୍ତୁ । କାଲି ହେଉଛି ଅମାବାସ୍ୟା, ଅନ୍ଧାର ରାତି, ଆମକୁ ସଜ ହେବ । ପାଞ୍ଚଣପୁର କୀର୍ତ୍ତନିଆ-ମାନେ ପ୍ରାୟ ରାତି ଅଧକୁ ହାଲିଆ ହୋଇ ଶୋଇ ପଡ଼ିଥିବେ । ଆମେ ଥିର ଥିର ଯାଇ ସବୁ ବାଦ୍ୟଯନ୍ତ୍ର ବୋହି ଆଣିବା ।

ତାଙ୍କ ଭିତରେ ଜଣେ ହରିବୋଲିଆ ଭଦ୍ରଲୋକିଆ ବୁଢ଼ା ଭାଲୁ ଥିଲା । କହିଲା, ରାମ, ରାମ, ଚୋରି ? ନାରେ ବାବା ସେକଥା ହେବନାହିଁ । ଚୋରିଟା ପାପ କାମ । ତା ପାଟିରୁ କଥା ସରିଛି କି ନାହିଁ, ତିନି ଚାରିଟା ଟୋକାଭାଲୁ ତା ଉପରକୁ କୁଦିପଡ଼ିଲେ । ତାକୁ ଶୂନ୍ୟେ ଶୂନ୍ୟେ ଟେକିନେଇ ଗୋଟାଏ ରାସ୍ତା ପାଖରେ କଚାଡ଼ିଦେଲେ । ବୁଢ଼ା ତା ଗାଣ୍ଡି ଆଉଁସୁଛି । ଟୋକାଗୁଡ଼ାକ ଆଖି ଲାଲ ଲାଲ କରି କହିଲେ ଦେଖ ହୋ ଏ ଅଲକ୍ଷଣା ବୁଢ଼ା ବଡ଼ ଅଗଭଙ୍ଗା ଅଛି । ଏଇଟା କାଳୀ ଗାଈ । ଏହାର ଭିନେ ଗୋଠ । କିହୋ, ମଣିଷମାନଙ୍କର ସିନା ଚୋରି ଖରାପ, ଆମେ ତ ଭାଲୁ ଜାତି, ଚୋରି ତ ଆମ ଜାତିର ଧର୍ମ । ସେଠି ପାପ ପାପ କହି ଆମ କାମ ଭଣ୍ଡୁର କରିବା କଥା । ନା ନା ତା ହେବ ନାହିଁ । କଙ୍ଗ୍ରେସ ଅମଳରେ ଏ ବୁଢ଼ାଭାଲୁ ଗୁଡ଼ାଙ୍କୁ ପଚାରେ କିଏ ? ତଡ଼ ତାଙ୍କୁ । ଆମକୁ ପୁଣି ଏ ମରହଟିଆଗୁଡ଼ାକ ବୁଦ୍ଧି ଶିଖେଇବେ । ଏହା ଦେଖି ସବୁ ବୁଢ଼ାମାନେ ଚୁପ୍ । ଭୟରେ ମୁହଁ ବନ୍ଦକରି ଖାଲି ଗାଉଁ ଗାଉଁ ହେଉଥାନ୍ତି ।

ସେଦିନ ପାଞ୍ଚଣପୁର ଗାଁ ଖାଲି ପଡୁଛି ଉଠୁଛି । ସମସ୍ତେ କୀର୍ତ୍ତନରେ ଭୋଳ । ରାତି ଅଧକୁ କୀର୍ତ୍ତନ ସରିଲା । ସମସ୍ତେ ପ୍ରସାଦ ପାଇ କିଏ କୁଆଡ଼େ ଶୋଇଗଲେ । ଏଣେ ଟୋକା ଭାଲୁମାନେ ଛକିଥାନ୍ତି । ନିଶବଦ ହେବାରୁ ଗୋଟି ଗୋଟି ହୋଇ ବାହାରିଲେ । ଠାରଠାର ହୋଇ ଗୋଡ଼ ଚିପି ଚିପି ଠାକୁରଘର ଦୁଆର ମୁହଁରେ ଯାଇ ପହଞ୍ଚିଲେ । ଜଣେ ହାମୁଡ଼େଇଲା ତା ଉପରେ ଆଉଜଣେ ଚଢ଼ିଲା । ତା କାନ୍ଧ ଉପରେ ଆଉଜଣେ ବସି ଝଂକିରଟା ଫିଟାଇଦେଲା । ସେତେବେଳକୁ ଠାକୁର ଘରୁ ଦୀପ ଲିଭି ନ ଥାଏ । ପଚିଶଟାଯାକ ଟୋକାଭାଲୁ

ଘର ଭିତରେ ଭିଡ଼ ହୋଇଗଲେ । ଜଣେ ଝାଞ୍ଜ ଧରଲା, ଆଉ ଜଣେ ଖୋଳ । ସେମାନଙ୍କ ଭିତରେ ଗୋଟାଏ ଚଗଲା ଟୋକା ଥିଲା । କଣ କଲନା ମୃଦଙ୍ଗରେ



ଟିକିଏ ଟିପା ମାରଦେଲା । ମୃଦଙ୍ଗ ହେଲା ଟଂ । ଭାର ମଜା ଲଗିଲା । ସେଇଠୁ ବାଁ ହାତରେ ଗୋଟାଏ କଷିଦେଲା ଗୁମ୍ । ବାଃ ଭାର ବଢ଼ିଆ ତ ? ତା ଦେଖା-ଦେଖି ଆଉ ଜଣେ ଟୋକା ଆଉଟିକିଏ ହାତ ମାରଦେଲା-ଟୁଂ ଟାଂ ଗୁମ୍ ଗାଁ । ଗୋଠ ମାତଲେ ଖଣ୍ଡିଆ ବ ମାତେ । ଆଉ ଜଣେ ଝାଞ୍ଜଟା ଧର ଝାଁ ଝାଁ କର ଦଥର ପିଟିଦେଲା । ଆଉ ମଜା ଦେଖିବ କଣ । ତା'ପରେ ରୀତମତ ଚାଲଲା ଟୁଂ ଝମ୍, ଗୁମ୍ ତାଳ ପଡ଼ୁଛି କି ନାହିଁ କିଏ ପଚାରେ । ଗୋଟା ଜୋରଦାରଆ ଭାଲୁ ମୃଦଙ୍ଗରେ ମାଇଲା ଯେ ଗୋଟାଏ ଚାପୁଡ଼ା ମୃଦଙ୍ଗଟା ଢ଼ୋ କର ଫାଟିଗଲା । ଏ ଶବ୍ଦ ଶୁଣି ଯେ ଯୁଆଡ଼େ ଶୋଇଥିଲେ ଉଠିଲେ । ଇଏ କି ଆଶ୍ଚର୍ଯ୍ୟ ଘଟଣା । ବଶ୍ୱାସ ବ କର ହେଉନାହିଁ । ଲୋକମାନଙ୍କ ଭିତରୁ ଜଣେ ଚୁପ୍‌କର ଆସି ବାହାରୁ ଝଞ୍ଜିର ଲଗାଇଦେଲା । ଭାଲୁମାନଙ୍କର ତେଣିକି ନଜର ନାହିଁ । କୀର୍ତ୍ତନ କରବାରେ ତ ସମସ୍ତେ ପାଗଳ ।

ତା'ପରେ ବଡ଼ ବଡ ଠେଙ୍ଗାରେ କନା ଗୁଡ଼ାଇ କିରାସିନି ଦେଇ ନିଆଁ ଲଗାଇ ଦଶ ପଚିଶଜଣ ବଳୁଆ ଲୋକ ଆସି ପହଞ୍ଚିଗଲେ । ଝିଞ୍ଜିର ଫିଟାଇ ସେ ନିଆଁ ଲଗା ଠେଙ୍ଗାରେ ଦେଲେ ମାଡ଼ । ଭାଲୁମାନେ ତ ଡେଉଁଛନ୍ତି । ରୁମଗୁଡ଼ାକ ପୋଡ଼ିଯାଇ ଫୁଲୁଝିଆ ଗନ୍ଧ ଛାଡ଼ୁଥାଏ । ନିଆଁ ଲାଗିଥାଏ ଦେହରେ । ଏଣେ ଦୌଡ଼ୁଥାନ୍ତି । ପଛରୁ ଠେଙ୍ଗାମାଡ଼ ପଡ଼ୁଥାଏ ଗୁମ୍ ଗାମ୍ । କାହାର ଗୋଡ଼ ଛୋଟା ହୋଇଗଲାଣି । କାହାର ମୁଣ୍ଡ ଫାଟିଗଲାଣି । ଜୀବନ ଗଲାବେଳ । କିଏ କାହାକୁ ପଚାରୁଛି । ରାସ୍ତା ତ ଦିଶୁନାହିଁ । ପଳେଇଛନ୍ତି ଯେ ଯୁଆଡ଼େ ପାଇଲା । ଖାଲି ଆର୍ତ୍ତନାଦ ଶୁଭୁଥାଏ ଆଃ, ଓଃ, ୟାଃ, କ୍ୟାଉଁ, ଭ୍ୟାଉଁ, ହୋୟାଁ । ସେମାନଙ୍କ ଭିତରେ ଗୋଟାଏ ମୁସଲମାନ ଭାଲୁ ଥାଏ । ତା ପିଠି ମେରୁଦଣ୍ଡରେ ସିଧା ବସିଲା ଠେଙ୍ଗା ପାହାର । ସେ ବିଚରା ୟା ଆଲ୍ଲା, ୟା ଆଲ୍ଲା କହି ପଳାଇଛି । ହଗି ମୂତି ଠାକୁରଘର ବି ଅସନା ହୋଇଗଲାଣି । ଭାଲୁମାନେ ପଳାଇଲେ । ଲୋକମାନେ ଏ ଦୃଶ୍ୟ ଦେଖି ହସି ହସି ଗଡ଼ୁଥାନ୍ତି ।

ଗଲାବେଳେ ଭାଲୁମାନେ ବୁଢ଼ାମାନଙ୍କ କଥାକୁ ମନେ ପକାଇ ଓଃ କି କର୍ମ କଲୁ । ଓଃ ବଡ଼ମାନଙ୍କ କଥା କାହିଁକି ମାନିଲୁ ନାହିଁ ଇତ୍ୟାଦି କଥା କହି କହି ଦୌଡ଼ୁଥାନ୍ତି । ସେହିଦିନଠାରୁ କେବେହେଲେ ଭାଲୁମାନଙ୍କ ସଭାରେ ଆଉ କୀର୍ତ୍ତନ କରିବା କଥା ଉଠିନାହିଁ ।





ବହୁତ ଯୁକ୍ତିତର୍କ ପରେ ବଭାଘର ହେବା ଠିକ୍ ହେଲା । କଟକୀ ବିଲୁଆମାନ ସାଙ୍ଗରେ ଢେଙ୍କାନାଳି ବିଲୁଆ ନାନୀର ବଭାଘର । କନ୍ୟାପକ୍ଷ କହିଲେ, ଝିଅଘରେ ବଭାଘର ହେବ । ତୁମେ କେତେ ବରଯାତ୍ରୀ ଆଣୁଛ ଆଣ । ସମସ୍ତଙ୍କ ପାଇଁ ଗୋଟାଏ ଲେଖାଏଁ ଗାତର ଯୋଗାଡ଼ କରିବୁ । ଜଙ୍ଗଲରେ ଯେତେ ଗଛ, ସବୁ ଗଛରେ ବାଣ ଖଞ୍ଜିଦେବୁ । ତମର ବାଉଁଶ ପୋତିବା ଦରକାର ନାହିଁ । କମ୍ ଖର୍ଚ୍ଚରେ କାମ ଚଳିଯିବ । କଥା ଅନୁସାରେ ବଜାରରୁ ମୁକୁଟ କିଣି ଆଣିଲେ । ସବୁ ବିଲୁଆ ବରଯାତ୍ରୀମାନେ ପାନ ଖଣ୍ଡେ ଲେଖାଏଁ ଖାଇଚାଲିଲେ । କନ୍ୟାପକ୍ଷ କହିଲେ, ଗଛପତ୍ର ଆଣି ସବୁ ଗାତ ଉପରେ ଛାଇଦେବୁ । ତା ହେଲେ ଖରା କାକରରୁ ରକ୍ଷା ପାଇବ । କଟକୀ ବିଲୁଆମାନେ ଭାରି ଖୁସି । ସାବାସ୍ ରେ କନ୍ୟାପକ୍ଷ ! ବଡ଼ ଭଦ୍ରାମି ଜାଣନ୍ତି ।

ବାହାଘର ଦିନ ହେଲା ଭୋଜି । ଗୋଟାଏ ଝରଣା କୂଳରେ । କାରଣ କେତେଗୁଡ଼ାଏ କଟକୀ ବିଲୁଆ ଆଆନ୍ତି । ସେମାନଙ୍କର ବଡ ବଦଭ୍ୟାସ । ଅଧା ଖାଇଥିବେ, ଏଣେ ପେଟ କରିବ କଅଁ । ପାଖରେ ପାଣି ନ ଥିଲେ ଅସୁବିଧା । ସେଥିଲାଗି ଝରଣା କୂଳରେ ଭୋଜି ହେଲା । ଖୁବ୍ ଖାଇବାକୁ ମିଳିଲା । ବରଯାତ୍ରୀଙ୍କ ଭିତରେ ଦି ଚାରିଟା ବୁଢ଼ାବିଲୁଆ ଥିଲେ । ସେମାନେ ଟିକିଏ ଟିକିଏ ହୁକା ବି ଟାଣିଲେ । ଗୁଡ଼ାଖୁ କିଣା ହୋଇ ଆସିଲା ତାଳଚେର ଜଙ୍ଗଲରୁ । କେତେଟା ଟୋକାବିଲୁଆଙ୍କ ପାଟିରୁ ଏଣେ ନାଳ ବୋହିଲାଣି । ବାଃ ହୁକାର ତ ଘାର ବଢିଆ ବାସନା । ଜଣେ କହିଲା, ହେ ମାଗୁନାହୁଁ । ତତେ ବି ଦେବେ ।

ଏହା ଶୁଣି ଆଉ ଜଣେ କଟକୀ ବିଲୁଆ କହିଲା କି? ଆମର ମାନ ସମ୍ମାନ ନାହିଁ ? ସେମାନେ ଭାବିବେ କଣ ? ସେମାନେ କହିବେ ଦେଖ ହୋ, ଏ



କଟକୀ ବିଲୁଆଗୁଡାକ ତ ଭାରି ଟକଳା । ନା ଭାଇ ଆମ୍ଭେମାନେ ଜାଣୁ ଜାଣୁ ମାତୃଭୂମିକୁ ବଦନାମୀ କରିବା ନାହିଁ । ଆଉ ଜଣେ ବଡ଼ ସାହସିଆ ଥିଲା । କହିଲା, ହେଃ, ତମେଗୁଡାକ ବଡ଼ ଚୋରମୁହାଁ । ।ସେଟକ୍ଷେ ହାଁ ହାଁ କରୁ କରୁ ସେ ମାରିଦେଲା ହୁକା ହୁକା ହୁକା । ତା ପାଖଜଣକ ତା ସାଙ୍ଗରେ ଯୋଗ ଦେଲା, ହୁକା ହୁକା-ଶେଷକୁ ସମସ୍ତେ ମାରି ବସିଲେ-ହୁକା ହୁକା ହୁକା ହୋ, ହୁକା ହୋ, ହୁକା ହୋ, ହୋ ହୋ, ହୁକା, ହୋ ହୋ ହୁକା । କନ୍ୟାପକ୍ଷ ବଡ଼ ହଇରାଣରେ ପଡ଼ିଲେ । କଣ କରିବେ । ଏ କଟକୀ ବିଲୁଆଗୁଡାକ ରାଜଧାନୀରୁ ଆସିଛନ୍ତି ଭଦ୍ରତା ଶିଖି ନାହାନ୍ତି । ଶେଷକୁ କେତେଟା ଭଙ୍ଗା ହୁକା ଥିଲା । ତାକୁ ମରାମତ କରି ଦିଆଗଲା । କଟକୀ ବିଲୁଆଙ୍କ ଭିତରୁ ଜଣେ ହିନ୍ଦି ଜାଣିଥିଲା । ହିନ୍ଦି ରାଷ୍ଟ୍ରଭାଷା ହେବା କଥା ଜାଣି ଆଗରୁ ଟିକିଏ ଟିକିଏ ଅଭ୍ୟାସ କରୁଥିଲା । କଥା

କଥାଟକ ତା ପାଟିରୁ ହନି ବାହାରପଡେ । ତା ହାତରେ ଯେମିତ ହୁକାଟା ପଡ଼ି ଯାଇଛି ପାଟି କର ଉଠିଲ —ହୁକା ହୁଆ ହୁକା ହୁଆ ଆଉ ଜଣେ ତାକୁ ପଚ୍ଚରଦେଲ, କ୍ୟା ହୁଆ, କ୍ୟା ହୁଆ । ହନି ଜାଣିଥିବା ବିଲୁଆଟା କହଲ ହୁକା ହୁଆ ହୁକା ହୁଆ, ହୁଆ ହୁଆ ହୁଆ ।

ତା'ପରେ ଆରମ୍ଭ ହେଲ ଶୋଭାଯାତ୍ରା । ସବୁ ବିଲୁଆମାନେ ଏନ୍. ସି. ସି. ପିଲାଙ୍କ ପର ଡାହନା, ବାଆଁ କର ଗୋଡ ମିଳାଇ ଚ୍ଲୁଆନ୍ତ । ଜଣେ ଜଣେ ମଝିରେ ମଝିରେ ଡେଇଁ ପଡୁଆନ୍ତ । ଘଡ ଦଶଟାକୁ ଶୋଭାଯାତ୍ରା ଆରମ୍ଭ ହେଲ । ସବାରୀ ଭିତରେ କନ୍ୟା ବସି ବସି ଖାଲ କାନ୍ଦୁଥାଏ – ଭେଓ ଭେଓ ଭେଓ । ହୋଓ ହୋଓ । କନ୍ୟାର ମା ବି କନ୍ୟା ସାଙ୍ଗରେ ଥାଏ । ସେ ତାକୁ ବୋଧ କରୁଥାଏ -ଭାଉଁ ଭାଉଁ, ଉଁ ଃ ଉଁ ଃ । ହାଉ ହାଉ ହୋ ।

ଗୋଟାଏ ଗଧକୁ ଭଡ଼ା ଆଣିଥାନ୍ତ ବରପକ୍ଷ । ତା ଉପରେ ବର ବସିଥାଏ । ବେଳେ ବେଳେ ଲାଙ୍ଗୁଳକୁ ଟାଣୁଥାଏ । ବରଯାତ୍ରୀମାନେ କଙ୍କଡ଼ା ଝୋଳ ଖାଇ ଖୁସିରେ କୁଦ କୁଦ ଚ୍ଲଥାନ୍ତ ।

ଯେମିତ କଟକ ପାଖ ହେଲ, ବର ତରଫରୁ ବିଲୁଆଣୀମାନେ ଆସି ବନ୍ଦାପନା କଲେ । ବୁଢ଼ା ବିଲୁଆମାନେ ବରଯାତ୍ରୀଙ୍କୁ ପଚ୍ଚରଲେ, ବାହାଘର କୈସା ହୁଆ ? ବରଯାତ୍ରୀମାନେ ଉତ୍ତର ଦେଲେ ଆଚ୍ଛା ହୁଆ । ବୁଢ଼ାମାନେ ପଚ୍ଚରଲେ ଭୋଜିଭାତ କୈସା ହୁଆ । ବରଯାତ୍ରୀମାନେ କହଲେ, ଆଚ୍ଛା ହୁଆ । ବୁଢ଼ାମାନେ ପଚାରଲେ ହୁକା ହୁଆ ? ବରଯାତ୍ରୀମାନେ ଉତ୍ତର ଦେଲେ ହୁଆ ହୁଆ । ସେଇଠୁ ସମସ୍ତେ ଏକାବେଳକେ କହଲେ, ଆଚ୍ଛା ହୁଆ । ଯୋ ହୁଆ ଆଚ୍ଛା ହୁଆ ।





# ଚନାମାଳୀ ଓ ଗନ୍ଧବତୀ

ଜନ୍ଦାର ଝିଅ ଗନ୍ଧବତୀ ଓ ପିମ୍ପୁଡ଼ିର ଝିଅ ଚନାମାଳୀ ଭାରି ସାଙ୍ଗ ଥିଲେ । ଜଣେ ଜଣକୁ ନ ଦେଖିଲେ ପାଣି ଟିକିଏ ପିଉ ନ ଥିଲା କି ଗୁଡ଼ ଟିକିଏ ବ ଖାଉନଥିଲା । ମାତ୍ର ହଠାତ୍ କେଜାଣି କାହିଁକି ଦୁଇ ସାଙ୍ଗ ଭିତରେ ଲାଗିଗଲା କଳି । ସେ କଳି ପୁଣି ସମ୍ବନ୍ଧ ତୁଟାତୁଟି ପର୍ଯ୍ୟନ୍ତ ଗଲା । ଚନାମାଳୀ ଆଗ ମୁହଁ ହୁଡ଼ିଲା । କଲେ କାଳୀ, ଡେଙ୍ଗୀ । ଭାରି ତ ବଢ଼ି ବଢ଼ି କହୁଚୁ ? ଗାଲରେ ଦଟା ଚଟକଣା ବସେଇ ଦେବ ଯେ । ଗନ୍ଧବତୀ ନ ରାଗି ଓଲଟି ହସିଲା । କହିଲା, କଲେ ନାଲି, ଡବଡ଼ବୀ ! ତୋତେ ନ ଜାଣି କହନ୍ତି ତରତରୀ ଖରଖରୀ । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଉଛୁ । ତୁ ଏଡ଼ିକି ବକଟେ ହୋଇ ମୋ ଗାଲରେ ପୁଣି ଚାପୁଡ଼ା ମାରିବାକୁ ବସିଲୁଣି । ଆଇଲୁ ଦେଖି । ମୋ ଗାଲକୁ ତୋ ହାତ ପାଇବନା ? କହିଲା ଚାପୁଡ଼ା । ହୁଁ ଃ ।

ଏଥର ଚନା ଖୁବ୍ ରାଗିଗଲା । ସହଜରେ ତ ଟେଡ଼ୀ, ମରମ କହିଲେ କିଏ ନ ଚିଡ଼ିବ । କହିଲା, ରହ ତତେ ଦେଖି ନେଉଛି । ଆଜି ସଞ୍ଜବେଳେ ପାଞ୍ଚ-ଜଣଙ୍କ ଆଗରେ ତୋ କଥା ପଡ଼ିବ । ତା ନ ହେଲେ ମୋତେ ପିମ୍ପୁଡ଼ି ଝିଅ ନ କହି ଉକୁଣୀର ଝିଅବୋଲି କହିବୁ । ହେଇ ଦେଖ୍, କାନରେ ଗଣ୍ଠି ପକାଇଲି । ଆରେ ! ଜାଣିନାହିଁ ଆମ ଜାତିରେ କି ଏକତା ଅଛି । କେଡ଼େ କେଡ଼େ ଜନ୍ତୁକୁ କାବୁ କରି ଦେଉଛୁ । ଆମେ ଚାରି ଛଅ ଜଣ ଝିଅ ମିଶିଗଲେ, ତୋତେ ଶୂନ୍ୟେ ଶୂନ୍ୟେ ଟେକିନେବୁ ।



ଗଣ୍ଡି ପୁଣି ହସିଲା । ହଉ, ଆସ ଚୋର ଛଅ ଜଣ । ତମେ ଛଅଟା ଯିଏ, ମୁଁ ଜଣେ ସିଏ । ମାନିଲ ତ ଏଥର ? ହଉ ଆସ, ମୋତେ କାନ୍ଧରେ ବସାଇ ବୁଲବ । ଦୋଳକୁ ଯେମିତି ଠାକୁରଙ୍କୁ ବିମାନରେ ରଖି କାନ୍ଧାନ୍ତି, ସେମିତି ।

ଏକଥା ଶୁଣି ଚନାମାଲୀ ରାଗରେ ଚଁ ଚଁ ହେଲା । ତା କାନମୂଳ ଝାଁ ଝାଁ ହୋଇଗଲା । କହିଲା କଣ ? ତୋର ଭାରି ସାହସ । ତୁ ଠାକୁର । କାଳୀର ତ ଭାରି ମୁହଁ । ରହ ତୋ ଠାକୁରପଣିଆ ଛଡ଼େଇ ଦେଉଛି । ଆରେ, କିଛି ନ କହିଲାରୁ ମୁହଁ ବଢି ଯାଉଛି । ଅଳସେଇ, ଠାପେଇ, ଦୁନିଆରେ ଯେତେ ଅଳସେଇ ମାଇକିନାଙ୍କୁ ଅଛନ୍ତି, ସମସ୍ତେ କଳେଇ । ଆମ ଭଳିଆ କାମିକା ହେଲେ କଳ କରବାକୁ ବେଳ କୁଆଡ଼ୁ ମିଳବ ଯେ କଳ ଲାଗିବ ।

ଓ-ଓ ହୋଓରେ କାମିକା ! ଭାରି ତ କାମିକା ପଣ ଦେଖାଉଚ । ଗନ୍ଧବତୀ ଅଟ୍ଟା କରି କହିଲା । ହଇଲେ, ତମେ ସବୁ କି କାମ କରୁଛ ବା ? ଖାଲି ଚୋରୀ ଶିଖିଛ । ଲୋକଙ୍କ ଘରେ ପଶି ଠେକିରୁ, ହାଣ୍ଡିରୁ, ଟିଫିନ କାରିଅରରୁ ଚୋର କରବା ତୁମର କାମ । ଚୋରଙ୍କ ମୁହଁ ଟାଣ ।

ଏଥର ଚନାମାଲୀ କି ଆଉ ସମ୍ଭାଳେ । ହାତକୁ ହଲେଇ କହିଲା, ହେ ହେ, ମୁହଁ ସମ୍ଭାଳି କଥା କହ । ତୁମକୁ ତ ଚୋର କରି ଆସେନା । ଲୋକମାନେ ତୁମକୁ ନିମନ୍ତ୍ରଣ କରି ଖାଇବାକୁ ଦେଉଥିବେ । ତମର ସେଇ ଧୂଳିଆଜନ୍ଦା ପଲକୁ ଛାଡ଼ିଦେଲେ ଆଉ ସବୁ ଅଳସୁଆ, ଖାଇମାଳୁ, ଠାପୁଆ ।

ଗନ୍ଧି କହିଲା, ହଉ ଯା, ହେଲେ ହେଲା । ଆମେ ବଡ଼ ଲୋକ ବସି ଖାଇବୁ । ଆମେ ଜମିଦାର ଲୋକ । ତମେ ସବୁ ମୂଲିଆ ମଜୁରିଆ । ଖଟି ଖଟି ମରୁଥାଅ । ତମେଗୁଡ଼ାକ ପେଟୁ । ଖାଲି ଗିଳା ଧରିଯାଇଛ । ଯେତେ ପାଇଲେ ବି ଯାଙ୍ଗେ ଯାଙ୍ଗେ ଖତମ । ଆମେ ଆଠଦିନେ ଥରେ ଚୋରି କରୁ । ତୁମେସବୁ ସବୁଦିନେ ଚୋରି କର ।

ଆ-ହାହା, ଚନାକୁ ହସ ଲାଗିଲା । ଚୋରୀ ତ ଚୋରି, ଆଠଦିନରେ କଣ ପନ୍ଦର ଦିନରେ କଣ । ଅଳ୍ପ ଚୋରି ଯାହା ବହୁତ ଚୋରି ସେଇଆ । ନା ନା, ସେ ସବୁ କିଛି ନୁହେଁ । ଏ୍ ମାଲଗୋଦାମିଆ ତମ ମୁହଁ ବଢ଼େଇ ଦେଇଛନ୍ତି । ଭଣ୍ଡାର ତ ପଡ଼ିଛି, କନ୍ଦ, ଚନା ସବୁ ଲୁଟିକରି ଖାଉଛ । ଆମେ ଚୋର ହେଲେ ତମେ ଡକାୟତ । ତୁମେସବୁ ବଡ଼ ଚୋର ।

ଗନ୍ଧି ଏଥରକ ରାଗିଗଲା । ହେ, ଗେଡ଼ୀ ! ଦେଖିବାକୁ ଏଡ଼େ ବକଟେ, ଫୁଟାଣି ଦେଖାଉଚୁ କେତେ । ତୋ ମୁଣ୍ଡ ପୋଡ଼ୁ ଲୋ । ଛୋଟୀ ଚନାମାଳୀ ।

କାଇଁ ? ମୋ ମୁଣ୍ଡ ପୋଡ଼ିବ ? ତୁ ଗାଳିଦେଲେ ମୋତେ ବି ଆସେ ଯେ । ମୋର ଘର ବୋଷେଇଘରେ କାରବାର । ବୋହୂ ଭୁଆସୁଣୀଙ୍କ ଠଉଁ କେତେ ପ୍ରକାର ଗାଳି ଶିଖିଛି । ଗାଳି ଦେବି ଯେ, ଏକାବେଳେକେ ବୁଡ଼େଇ ଦେବି । ବୋକା କରି ଛାଡ଼ିଦେବି ।

ଏଥରକ ଗନ୍ଧି ଡରିଗଲା । ବାପରେ ବାପ । ଏଗୁଡ଼ାକ କଳି ଶିଖିବାକୁ ତାଲିମ ପାଉଛନ୍ତି । ଏଗୁଡ଼ାକ ଛୋଟଲୋକ । ୟାଙ୍କ ସଙ୍ଗରେ ଲାଗିଲେ ମାନ ମହତ ଯିବ । କଥାରେ ଅଛି ସକଳ ଯାଉ, ମହତ ଥାଉ, ମହତ ଗଲେ ନ ମିଳେ ଆଉ । ତଥାପି ମୁହଁ ଫୁଟାଣି ବି ଛାଡ଼ୁନାହିଁ । ଶେଷକୁ କହିଲା, କାଳୋ ଚୀନା, ତୁ ଗୋଟା ମେଅଁଡ଼ । ତତେ ମୁଁ ଖାତିର କରିଛି ? ତୋ ସଙ୍ଗରେ ଲାଗିଲେ ମୋ ଇଜ୍ଜତ ଯିବ । ତୁ ସେମିତି ଭଟର ଭଟର ହେଉଥା । ମୁଁ ଯାଉଛି । ତୁ କୁକୁର ପଛରେ ଭୁକୁଥା । ଏହା କହି ତଗଡ଼ଗ ହୋଇ ଚାଲିଗଲା । ଚନାମାଳୀ ଭାବିଲା ସେ ଜିତିଛି । ସେ ବି ମନକୁ ମନ ଖୁସି ହୋଇ ତା ଗାତରେ ପଶିଲା ।

—୦—




ପ୍ରତିଯୋଗିତାର ସ୍ଥାନ ସପ୍ତଶଯ୍ୟା ପାହାଡ଼ । ସମସ୍ତ ପ୍ରକାର ବନ୍ଦୋବସ୍ତ ହୋଇଛି । ପଶୁପକ୍ଷୀମାନେ ଆଜିକାଲି ନୂଆ ନୂଆ ବିଭାଗର ତାଲିମ ପାଉଛନ୍ତି ବୋଲି କଥା । ଏହି ଉତ୍ସବରେ ସଭାପତିତ୍ୱ କଲେ ବଣର ରାଜା ଖୋଦ ପଶୁପତି ଅର୍ଥାତ୍ ସିଂହ । ସଭାପତି ଯଥାସମୟରେ ଆସନ ଗ୍ରହଣ କଲେ । ଚାଲିଥାଏ ତାଳି । ଭାଲୁର ହାଉଁ ହାଉଁ, ଘୁଷୁରୀର ଘାଉଁ ଘାଉଁ, ବିରାଡ଼ିର ମ୍ୟାଉଁ ମ୍ୟାଉଁ, ମୂଷାର ଚ୍ୟାଉଁ ଚ୍ୟାଉଁ । ସାପ ନିଃଶ୍ୱାସ ଛାଡ଼ୁଥାଏ ସଁ ସଁ, ଭଅଁର ହେଉଥାଏ ଭଁ ଭଁ । ପେଚା କୋରଡ଼ ଭିତରୁ ମୁଣ୍ଡଟି କାଢିଦେଇ କହୁଛି ଚାଲିଥାଏ ଉଃଁ ଉଃଁ ।

ଆଗେ ଆରମ୍ଭ ହେଲା ଉଚ୍ଚଡିଆଁ । ଏଥିରେ ବାଘ ହେଲା ପ୍ରଧାନ ବିଚାରକ । ସେ ବା କିପରି ପ୍ରତିଯୋଗିତାରେ ଯୋଗ ଦେବ । ତଥାପି ଖୁବ୍ ପ୍ରତିଦ୍ୱନ୍ଦ୍ୱିତା ହେଲା । ହରିଣ, ମାଙ୍କଡ, ବିଲୁଆ କୁକୁର ଓ ବିରାଡ଼ି ମଧ୍ୟରେ । ଏଥିରେ ପ୍ରଥମ ପୁରସ୍କାର ମାରିନେଲା ହରିଣ, ଦ୍ୱିତୀୟ ହେଲା ମାଙ୍କଡ, ତୃତୀୟ ହେଲା ବିରାଡ଼ି । ବିଲୁଆ କୁକୁରର ମନ ଫିକା ପଡ଼ିଗଲା । ସେ କାନ୍ଦି ପକାଇଲା ଭେଁଓ ଭେଁଓ । ସଭାପତି କହିଲେ ଦେଖ, ଏ ସବୁ ବୀରତ୍ୱର କଥା ନୁହେଁ । ହାରିବା ଜିତିବାଟା ବଡ଼କଥା ନୁହେଁ । ପ୍ରତିଦ୍ୱନ୍ଦ୍ୱିତା କରିବାରେ ବାହାଦୂରୀ ଅଛି । ଶେଷକୁ ତାକୁ ଗୋଟିଏ ସାନ୍ତ୍ୱନା ପୁରସ୍କାର ଦିଆଗଲା ।

ଏହାପରେ ଆରମ୍ଭ ହେଲା ଦୌଡ଼ । ବିଲୁଆର ଫୁର୍ତ୍ତି ଦେଖିବ କ'ଣ । ସେ ତ ସାଇଁ ସାଇଁ ଉଡ଼ିଗଲା । ହରିଣର ଷ୍ଟାର୍ଟ ନେଉ ନେଉ ବିଳମ୍ବ ହୋଇଗଲା । ତଥାପି ଦୌଡ଼ୁଥାଏ । ସମସ୍ତେ ଭାବିଲେ ବୋଧହୁଏ ଟପିଯିବ । ମାତ୍ର ତେଉଁ

ଡେଇଁ ଯିବା ହେତୁ ତା ଲାଇନରେ ନ ଯାଇ ଅନ୍ୟ ଲାଇନ ଆଡ଼କୁ ମାଡ଼ିଗଲା ସେହି ଦୋଷରେ ତାକୁ ସେଥିରୁ ବାଦ ଦିଆଗଲା । ସିଂହ ଘୋଷଣା କଲା, ଏପରି ଦୋଷକୁ ଇଂରାଜିରେ କହନ୍ତି ଡିସ୍‌କ୍ୱାଲିଫିକେସନ ।



ଶେଷକୁ ଲମ୍ବଡ଼ିଆଁ ଆରମ୍ଭ ହେଲା । ଏଥିରେ ହରିଣ ସହିତ ପ୍ରବଳ ପ୍ରତିଯୋଗିତା କଲା ଗୋଟିଏ ଯୁଦ୍ଧଘୋଡ଼ା । ମାତ୍ର ସେ ତ ଯୁଦ୍ଧଘୋଡ଼ା ସବୁବେଳେ ଯୁଦ୍ଧ ପଡ଼ିଆରେ ତାର କାରବାର । ତାକୁ ଜଙ୍ଗଲ ସାର୍ଟିଫିକେଟ ମିଳିବ କି ନାହିଁ ? ଚୁଚୁନ୍ଦ୍ରା ଏହି ବୈଧାନିକ ପ୍ରଶ୍ନଟି ଉଠାଇଲା । ଶେଷକୁ ସ୍ଥିର ହେଲା ଯୁଦ୍ଧଘୋଡ଼ା ହେଲେ ମଧ୍ୟ ବଣରେ ତିନିବର୍ଷ ଏକାଦିକ୍ରମେ ରହିଯିବାରୁ ତାକୁ ଜଙ୍ଗଲ ପଶୁ ବୋଲିଯିବ । ଆଇନଜ୍ଞ ଶୃଗାଳ ଏଇ ମତ ଦେଲାରୁ ଶେଷକୁ ଗ୍ରହଣ କରାଗଲା ।

ଯୁଦ୍ଧଘୋଡ଼ା କିନ୍ତୁ ଲମ୍ଫାଡ଼ିଆଁରେ ପାରିଲା ନାହିଁ । ମାତ୍ର ଦୌଡ଼ରେ ସେ ଦୁଇଥର ପୂର୍ବ ରେକର୍ଡ଼ ଭଙ୍ଗ କଲା । ମାଇକ୍ ଧରି ଏକଥା ସମସ୍ତଙ୍କୁ ଜଣାଇଲା ପ୍ରଚାର ଦାୟିତ୍ୱରେ ଥିବା କାକ । ତା'ପରେ ବାଉଁଶଡ଼ିଆଁ ବା ପୋଲ୍‌ଭଲଟ୍ । ଏଥିରେ ମାଙ୍କଡ଼ ଗତ ପନ୍ଦରବର୍ଷ ରେକର୍ଡ଼ ଭଙ୍ଗ କଲା । ହରିଣ ତ କେତେ-ବେଳୁ ମନକଷ୍ଟ କରି ବସିଛି । ବାଘମାମୁଁ ଥରେ ତାକୁ ଡିସ୍‌କ୍ୱାଲିଫାଇଡ୍ କରିଛି । ମାତ୍ର ସେ ଆଶା କରିଥିଲା ପ୍ରତିବନ୍ଧକ ଦୌଡ଼ରେ ଜିତିବ ବୋଲି । ସମସ୍ତେ ମଧ୍ୟ ସେଇଆ ଭାବିଥିଲେ । ପ୍ରଥମେ ମୁହଁରେ ରୁମାଲ କାମୁଡ଼ି ହରିଣ ଦୌଡ଼ିବାକୁ ଆରମ୍ଭ କଲା । ପ୍ରଥମେ ନଦୀ ମାଟିଏ ଡେଇଁବାକୁ ପଡ଼ିବ । ତା'ପରେ କଣ୍ଟାଝାଟି ପଡ଼ିଥିବା ଦଶହାତ ଓସାରର ଗାତକୁ ଡେଇଁବାକୁ ପଡ଼ିବ । ତାପରେ ପର୍ବତ ଉପରେ ଚଢ଼ି ବୁଲି ଆସିବାକୁ ପଡ଼ିବ । ସବୁ ହେଲା । ମାତ୍ର ପର୍ବତ ଉପରେ ଚଢ଼ି ବୁଲିଲା ବେଳେ ଶିଙ୍ଗରେ ଲଗିଲା ଝଟା । ଆଉ ଯାଏ କୁଆଡ଼େ । ଛଡ଼ାଇଲେ ବି ଛାଡୁନାହିଁ । ଏତିକିବେଳେ ଦେଖି ବିଲଆ-କୁକୁର ତା ଆଗକୁ ଟପିଗଲା । ଲଟାରୁ ଶିଙ୍ଗକୁ ବାହାର କଲାବେଳକୁ ଆଉ କାହିଁ ଥାଏ । ବାର୍‌ହା, କୋକିଶିଆଳୀ ଆଦି ବହୁତ ବୁଝାଇବାରୁ ଚୁପ୍ ହେଲା । ବିଲଆ ରେକର୍ଡ଼ ବ୍ରେକ କଲାରୁ ବାଘମାମୁଁ ଆସି ତାକୁ କୁଣ୍ଢାଇ ପକାଇଲା ।

ଏହାପରେ ବିଶ୍ରାମ ସମୟ । ବାଜିଲା ରେକର୍ଡ । କୋଇଲି, ବଣି, ଭରଦ୍ୱାଆ, କୁମ୍ଭାଟୁଆ, ପେଚା, ଗଧ, ମୟୂର, କାଉ ଓ ଚୁଚୁନ୍ଦ୍ରା ପ୍ରଭୃତି ସଙ୍ଗୀତଜ୍ଞମାନେ ମିଳିତ କଣ୍ଠ ଦାନ କଲେ । ପିମ୍ପୁଡ଼ି ଓ ମହୁମାଛି ସ୍ୱେଚ୍ଛାସେବକ ରୂପେ ଯାହାର ଯାହା ଦରକାର, ଯୋଗାଇ ଦେଉଥାନ୍ତି । ଓଧ ଗୋଟାଏ ପ୍ରସ୍ତାବ ଦେଲା । ଆଜି କ୍ରୀଡ଼ାପରେ ମାଗୁର ମାଛ ଝୋଳଟା ହେଉ । ମାତ୍ର ସମସ୍ତେ ପ୍ରତିବାଦ କଲେ । ଏ କି କଥା । ଏପରି ପବିତ୍ର ଦିନରେ ଆମିଷ ଭୋଜନ ନିଷେଧ । ତେଣୁ କନ୍ଦମୂଳ, ଓଳୁଅ ଓ ସାରୁ ପ୍ରଭୃତି ସୁଖାଦ୍ୟମାନ ତିଆରି ହୋଇ ଆସିଲା । ବଣର ବିଭିନ୍ନ ଫଳମୂଳ ବି ଅଣାଗଲା । ଆନନ୍ଦ ଦେଖିବ କି'ଣ ।

ବିଶ୍ରାମ ପରେ ଦଉଡ଼ିଟଣା, ମୁଥ ମରିମରି, ମଲ୍ଲ ଯୁଦ୍ଧ, ଭାରୋତ୍ତୋଳନ ପ୍ରଭୃତି ଅନୁଷ୍ଠିତ ହେଲା । ହାତୀ ଏଥିରେ ରେକର୍ଡ଼ ସୃଷ୍ଟି କଲା । ମାତ୍ର ମୁଥ ଯୁଦ୍ଧରେ ଗଣ୍ଡାଠାରୁ ହାରିଗଲା । ହାତୀର ଆଘାତରୁ ନିଜକୁ ବଞ୍ଚାଇ ଟିକିଏ

ଟିକିଏ ଠୁକୁରେଇ ଗଣ୍ଡା ବହୁତ ପଏଣ୍ଟ ପାଇଗଲା । ଶେଷକୁ ଆସିଲା ବ୍ୟାୟାମ ବିଦ୍ୟା । ଏଥିରେ ଗରଳା ସଂପ୍ରଦାୟର ଜୀବମାନେ ବିଶେଷ ପାରଦର୍ଶିତା ଦେଖାଇଲେ । ଓଲଟଚତ୍, ସମାନ୍ତର ଦଣ୍ଡ ଇତ୍ୟାଦିରେ ଶିମ୍ପାଜୀ ପ୍ରଭୃତି କୃତିତ୍ୱ ପ୍ରଦର୍ଶନ କଲେ ଓ ଦଳଗତ ଭାବରେ ସବୁଠାରୁ ଅଧିକ ସ୍ୱର୍ଣ୍ଣପଦକ ପାଇଲେ । ମହୁମାଛି ଓ ପିମ୍ପୁଡ଼ି ସ୍ୱେଚ୍ଛାସେବକ କପ୍ ପାଇଲେ । ଏହାପରେ ସଭାପତିଙ୍କ ଭାଷଣ ଓ ଗଧର ବିଦାୟସଙ୍ଗୀତ ଗାନ କରାଗଲା ପରେ ସଭା ଭାଙ୍ଗିଲା ।






ଆମ ଭାରତବର୍ଷରେ ମାନ୍ଧାତା କାଳରେ ଧନ୍ୱନ୍ତରୀ ବୋଲି ଜଣେ ରାଜା ଥିଲେ । ସେ ରାଜା ବଡ଼ ନ୍ୟାୟପରାୟଣ ଓ ପ୍ରଜାବତ୍ସଳ । ପ୍ରଜାମାନଙ୍କପାଇଁ ତାଙ୍କ ପ୍ରାଣ ସର୍ବଦା କାନ୍ଦି ଉଠୁଥିଲା । ମାତ୍ର ଲୋକେ କହୁଥିଲେ ସେ ବଡ଼ ଖିଆଲି । ତାଙ୍କ ବିଚାର ମଧ୍ୟ ବଡ଼ ବିଚିତ୍ର ଧରଣର ଥିଲା । ସେ ଗୋଟିଏ ଟଙ୍କା ସୁଦ୍ଧା ରାଜକୋଷରୁ ନିଜ ସ୍ୱାର୍ଥପାଇଁ ଖର୍ଚ୍ଚ କରୁ ନ ଥିଲେ । ରାଜ୍ୟର ସମସ୍ତ ଅର୍ଥ ପ୍ରଜାଙ୍କ ଉପକାରରେ ଲାଗୁଥିଲା । ତେଣୁ ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କରୁଥିଲେ ।

ଥରେ ରାଜା ଧନ୍ୱନ୍ତରୀ ତାଙ୍କ ଦେଶରେ ଥିବା ସବୁ ଅଳସୁଆ ଲୋକଙ୍କୁ ଆଣି ଗୋଟିଏ ଚିଡ଼ିଆଖାନାରେ ରଖିଲେ । ଚାରିଆଡ଼େ ଲୁହାଛଡ଼ ଦିଆ-ଯାଇଥାଏ । ପଦାକୁ ବାହାରିବାର ଉପାୟ ନାହିଁ । ତାଙ୍କର ଯୁକ୍ତି ହେଉଛି ଅଳସୁଆମାନେ ହେଉଛନ୍ତି ଦେଶର ଶତ୍ରୁ । ଅଳସୁଆମି ଗୋଟାଏ ଛୁଆଁ ରୋଗ । ଜଣେ ଅଳସୁଆ ପାଖରେ ବସାଉଠା କଲେ କିଛିଦିନ ପରେ ଆଉ ଜଣେ ବି ଅଳସୁଆ ପାଲଟି ଯିବ । ଫଳରେ ଦେଶରେ ଯେତେ ଯୋଜନା କଲେ ବି ସଫଳ ହେବ ନାହିଁ । ଅଳସୁଆଗୁଡ଼ାଙ୍କର ତ ଆଉ କିଛି କାମ ନ ଥାଏ । ଯା ନାଁରେ ତା ନାଁରେ ଫୁଲାଏ ଗପନ୍ତି । ଏମାନଙ୍କ ସମ୍ପର୍କରେ ଆସିଲେ ବୁଦ୍ଧିଆ ଲୋକ ବି ନିର୍ବୁଦ୍ଧିଆ ହୋଇଯିବ । ଏଗୁଡ଼ାକ ପଶୁଙ୍କ ସହିତ ସମାନ ।

ଧନ୍ୱନ୍ତରୀଙ୍କ ଆଦେଶକୁ କିଏ ଅମାନ୍ୟ କରିବ । ସମସ୍ତେ ବୋକାପରି ଅନାଇଥାନ୍ତି । କେହି କିଛି ବୁଝି ପାରୁ ନ ଥାନ୍ତି । ଶେଷକୁ ମହାଗନ୍ତୁ ନାମରେ ଜଣେ ଟାଉଟରିଆ ଲୋକ ବାହାରିଲା । ସେ ଲୋକଙ୍କୁ ମତାଇଲା ଗୋଟାଏ ସଭା କରିବା ପାଇଁ । ଦେଖ ହେ, ଏ ରାଜା ମଣିଷଗୁଡ଼ାକୁ କହୁଛନ୍ତି ପଶୁ । ଏ ରାଜାକୁ ଧର୍ମ ଛାଡ଼ିଲା । ଚାଲ ସମସ୍ତେ ଦାବୀ କରିବା ରାଜା ଅତିଶୀଘ୍ର ଆମ ଅଳସୁଆ ଭାଇମାନଙ୍କୁ ଛାଡ଼ି ଦିଅନ୍ତୁ । ସେମାନେ ଅଳସୁଆ ହୁଅନ୍ତୁ କି ଯାହା ହୁଅନ୍ତୁ ଆମର ଭାଇ ତ ?

ବହୁ ଯୋଗାଡ଼ କରି ସଭାଟିଏ କରାଗଲା । ଅଳସୁଆଙ୍କ ପାଇଁ ସ୍ୱତନ୍ତ୍ର ମଣ୍ଡପ ତିଆରି ହୋଇଥାଏ । ସବୁ ଅଳସୁଆଙ୍କୁ ଏକାଠି କରାଗଲା । ଲୋକମାନେ



ଅଳସୁଆଙ୍କ ସଭା ଦେଖିବାପାଇଁ ଭିଡ ଆରମ୍ଭ କରି ଦେଲେଣି । ସମସ୍ତଙ୍କଠାରୁ ଯେ ବେଶି ଅଳସୁଆ ତାକୁ ସଭାପତି କରାଗଲା । ଚୌକିରେ ଗଦି ପକାଯାଇ ତାକୁ ବସାଇ ଦିଆଗଲା । ମାତ୍ର ଗଦିପକା ଚଉକିରେ ବସୁ ବସୁ ସଭାପତିଙ୍କୁ

ନିଦ ଆସିଗଲା । ମହାଭାଲୁ ବଡ଼ ବିପଦରେ ପଡ଼ିଲେ । ସଭାପତି ତ ଶୋଇଲେ, ସଭାକାମ ଚଳାଇବ କିଏ ! ତେଣୁ ଜଣେ ଲୋକକୁ ଗୋଟିଏ କଣ୍ଟା ଧରାଇ ଦେଇ ସଭାପତିଙ୍କ ପଛରେ ବସାଇ ଦିଆଗଲା । ଯେମିତି ସଭାପତି ଘୁଙ୍ଗୁମାଇ ପଡ଼ିବେ, ସେମିତି ପଛରୁ ଟିକିଏ ଖେଞ୍ଚି ଦେଉଥିବ । ତା ହେଲେ ନିଦ ଭାଙ୍ଗିଯିବ ।

ତା ପରେ ମହାଭାଲୁ ଆରମ୍ଭ କଲେ ବକ୍ତୃତା-"ବନ୍ଧୁଗଣ, ଆପଣମାନେ ପ୍ରତିବାଦ କରନ୍ତୁ । ଏ ଅପମାନ ଅସହ୍ୟ, ମଣିଷ କେବେ ପଶୁ ହୋଇ ପାରେନା" । ଏତିକି କହୁଛନ୍ତି ଦେଖିପକାଇଲେ ସଭାପତି ନାକସିଟିକା ଦେଲେଣି । ଆଉ ଥୋଡ଼ାଏ ଅଳସୁଆ କାନ୍ଧକୁ ଆଉଜିପଡ଼ି ଆଁ କରି ଘଡ଼ର ଘଡ଼ର ହେଉଛନ୍ତି । ପାଟିରେ ମାଛି ପଶି ଗଲେଣି । ଏଣେ ଯେଉଁ ଲୋକ କଣ୍ଟା ଧରି ବସିଥିଲା, ତାର ବି ଆଖି ଲାଗିଗଲାଣି । ମହାଭାଲୁ ପଛଆଡ଼ୁ ଗୋଟାଏ ଗୋଇଠା ଦେଲେ ସେ କଣ୍ଟାଧରା ଲୋକକୁ । ହଠାତ୍ ସେ ଲୋକଟି ଚମକିପଡ଼ି ସଭାପତିଙ୍କୁ ଖେଞ୍ଚିଦେଲା । ସଭାପତି ଇଲୋ ମାଲୋ କହି ଚମକି ଉଠି ଠିଆ ହୋଇଗଲେ ।

ମହାଭାଲୁ ସଭାପତିଙ୍କୁ ଅନୁରୋଧ କଲେ ବକ୍ତାମାନଙ୍କୁ କିଛି କିଛି କହିବାକୁ ଡାକନ୍ତୁ । ସଭାପତି ସେହିପରି କାମ କଲେ । ମାତ୍ର କେହି ଉଠିଲେ ନାହିଁ । ଶେଷକୁ ଠେଲାପେଲା କଲାରୁ ଜଣେ ଉଠି ଠିଆହୋଇ ଚାରିଆଡ଼େ ଆଖିବୁଲାଇ ଆଣି କହିଲା, "ଆଃ, ଆଜି କି ଆନନ୍ଦ । ଏତେ ଲୋକ ଠିଆ ହୋଇଛନ୍ତି । ଓଃ କେତେ ସୁନ୍ଦର ଜାଗା ।" ଏତିକି କହୁଛି ତାକୁ ଜବରଦସ୍ତ ବସାଇ ଦିଆଗଲା । ତା'ପରେ ଆଉଜଣେ ଉଠିଲା, କହିଲା —"ଆମଘରେ ଶୋଇବାକୁ ଏତେଟିକେ ଜାଗାନାହିଁ । ଦିନ ବାରଟା ପର୍ଯ୍ୟନ୍ତ ବି ଶୋଇ ହୁଏନା । ଏଠି ଆମ ମହାରାଜା ସମସ୍ତଙ୍କ ପାଇଁ ଖଟ ଖଣ୍ଡେଲେଖା ଦେଇଛନ୍ତି । କାଳେ ବିଲୁଆ କୁକୁର ପଶିଆସିବେ, ସେଥିଲାଗି କୁହା ବାଡ଼ ବି ଘେରାଇ ଦେଇଛନ୍ତି । ଆମ ମହାରାଜା କେତେ ଦୟାଳୁ ।" ତା'ପରେ ସେ ଲୋକଙ୍କୁ ସୁଦ୍ଧା ବସେଇ ଦିଆଗଲା । ଅଳସୁଆଙ୍କ କଥା ଶୁଣି ଦର୍ଶକମାନେ ହୋ ହୋ ପାଟିକରି ହସୁଥାନ୍ତି । ମାତ୍ର ବକ୍ତା ଦୁଇଜଣ ସେତେବେଳକୁ ନିଦରେ ଅଚେତ ।

ମହାଭାଲୁଙ୍କୁ ବଡ଼ ଅପମାନ ଲାଗିଲା । ସେ ଆଉଜଣକୁ ଉଠାଇଲେ । ସେ ଜଣକ ଏଥର ଚିଡ଼ିଗଲା । ଓଃ କି ଖଚଡ଼ା ଲୋକଟା ହୋ ତମେ, ଆମେ ସଭାରେ

ଝିଙ୍କାଏ ନିଶ୍ଚିନ୍ତରେ ଶୋଇଛୁ ; ତମେ ଆମକୁ କେଞ୍ଚୁଛ । ଆମେ ସଭି ଫଙ୍ଗି କିଛି ଜାଣୁନା । ଯା, ଏହା କହି ବସିପଡ଼ି ପଟେଙ୍ଗ ପଟେଙ୍ଗ ଘୁଙ୍ଗୁଡ଼ି ମାରିଲା ।

ଏହି ସମୟରେ ଦେଖାଗଲା ନିଜେ ମହାରାଜା ଦ୍ୱାର ମୁହଁରେ । ସବୁ ଲୋକେ ଆଡ଼େଇ ଗଲେ । ମହାଭାଲୁ ପଛେଇ ପଛେଇ ଛୁ । ମହାରାଜା କହିଲେ ଶୁଣ, ତୁମ୍ଭେମାନେ ଭାବୁଛ ମୁଁ ଏ ଲୋକମାନଙ୍କୁ ଏହିପରି ରଖିବି ? ତା ନୁହେଁ; ଏମାନଙ୍କ ଅଳସୁଆ ରୋଗ ଭଲ କରିବାପାଇଁ ଜର୍ମାନୀରୁ ବିଶେଷଜ୍ଞ ମଗାଇଛି । ଏଥିପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚହେବ । ତା'ପରେ ଦେଖିବ, ଏହିମାନେ ଦିନେ ଦେଶର ସୁଲତାନ ହେବେ ।

ହଠାତ୍ ଗୋଟାଏ ଗୋଳମାଳ କଣ ଶୁଭିଲା । କଥା କଣ କଥା କଣ, ଦେଖ ଦେଖ—ଜଣେ ଲୋକ ଦେଖିବାକୁ ଦୌଡ଼ିଲା । ଆସି କହିଲା, ଏ ଗୋଳମାଳ ଅନ୍ୟ କିଛି ନୁହେଁ । ଚିଡ଼ିଆଖାନା ଭିତରେ ସବୁ ଅଳସୁଆମାନେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ମହାରାଜା ଆଉକିଛି ନ କହି ମୁରୁକି ହସି ଚାଲିଗଲେ । ପଛରୁ—ଶୁଭିଲା ମହାରାଜା କୀ ଜୟ ।






ଥରେ ହିନ୍ଦୁସ୍ଥାନରୁ ଜଣେ ବାବାଜି ଆସି ରାମପୁର ଗାଁରେ ପହଞ୍ଚିଲେ । ତାଙ୍କ ସଙ୍ଗରେ ଚାରି ପାଞ୍ଚଜଣ ଶିଷ୍ୟ ମଧ୍ୟ ଥାନ୍ତି । ତାଙ୍କ ନାଁ ବାବା କ୍ୟାପରୁଆ ଦାସ । ରାମପୁରର ମଶାଣି ପାଖକୁ ଗୋଟାଏ ଝଙ୍କାଳିଆ ବରଗଛ ଥାଏ । ସେହି ଗଛ ତଳେ ମଠ କରି ଶିଷ୍ୟମାନଙ୍କୁ ସଙ୍ଗରେ ନେଇ ବାବାଜି ଥୋଡ଼ାଏ ଦିନ ରହିଲେ । ସବୁବେଳେ ଧୁନି ଲଗାଇଥାନ୍ତି । ସମସ୍ତଙ୍କୁ କହୁଥାନ୍ତି ଜୀବେ ଦୟାକର । ଆମିଷ ଭୋଜନ କରନା । ସମସ୍ତେ ଭାବିଲେ ବଡ ପ୍ରତ୍ୟକ୍ଷ ବାବା । କି ସାଧନା ! ସେ ସାଧନା ଦେଖି ଶହ ଶହ ଲୋକ ତାଙ୍କ ପାଖରେ ଗଦା ହେଉଥାନ୍ତି । ସମସ୍ତେ ପାଦଧୂଳି ନେଇ ମୁଣ୍ଡରେ ମାରୁଥାନ୍ତି । ବାବାଜି ବହୁତ ଗୁଣୀ ବିଦ୍ୟା ବି ଜାଣନ୍ତି । ମନ୍ତ୍ର ବଳରେ ଏପାରି ଗଛକୁ ସେପାରି କରି ଦିଅନ୍ତି । ତାଙ୍କ ଚେଲାମାନଙ୍କ ଠାରୁ ଏହିପରି ଅନେକ କଥା ଶୁଣିବାକୁ ମିଳେ । ବାବା କ୍ୟାପରୁଆ ଦାସ ଗଞ୍ଜେଇ ଖାଇ ଅନ୍ତଲ ପେଟକୁ ଦେଖାଇ ଗଡ଼ୁଥାନ୍ତି । ଦେହଯାକ ଖାଲି ପାଉଁଶ ବୋଳା ହୋଇଥାଏ । ଲୋକମାନେ ଭକ୍ତିରେ ଚାଉଳ, ପରିବା, ଦୁଧ ଘିଅ ଆଣି ଗଦା କରୁଥାନ୍ତି । ଦୁଇଜଣ ଶିଷ୍ୟ ଏସବୁ ଜିନିଷକୁ ସଜାଡ଼ିବାରେ ଲାଗିଥାନ୍ତି । ସବୁବେଳେ ଭଣ୍ଡାର ଘର ପୂର୍ଣ୍ଣ ।

ଟଙ୍କା ପଇସା ଖୁବ୍ ଆସିଲା । ଶିଷ୍ୟମାନେ ଘିଅଦୁଧ ଖାଇ ମୋଟା ହୋଇ ଗଲେ । ଏଣିକି ଲୋକମାନଙ୍କ ଭିତରେ ଅସନ୍ତୋଷ ଦେଖାଗଲା । ବାବା କୁଆଡ଼େ ଧନୀ ଲୋକମାନଙ୍କୁ ଭଲ ଚକ୍ଷୁରେ ଦେଖୁଛନ୍ତି । ଗରିବ ଲୋକମାନଙ୍କୁ ପଚାରୁ ନାହାନ୍ତି । ବଡ ଲୋକମାନଙ୍କ ସହିତ ଘଣ୍ଟା ଘଣ୍ଟା ଧରି କଥାବାର୍ତ୍ତା କରୁଛନ୍ତି । କେତେକ ବୁଢ଼ା ବୁଢ଼ା ଲୋକ ନିଜ ନିଜ ଭିତରେ କଥାବାର୍ତ୍ତା ହେଉଥାନ୍ତି— ବାବାଜିମାନେ ଯଦି ଧର୍ମ ନ ରଖିବେ, ତେବେ ପୃଥିବୀରେ ଧର୍ମ ରହିବ କିପରି ?

ବାବା କ୍ୟାପରୁଆ ଦାସ ବଡ଼ ଉଦାର । ଅନେକ ମୁସଲମାନ ଓ ହରିଜନ ମଧ୍ୟ ତାଙ୍କ ଶିଷ୍ୟ ହୋଇଗଲେଣି । କେତେକ ଲୋକ ପ୍ରଚାର କରିଦେଲେ ମୁସଲମାନ ପଡାରୁ ଅଣ୍ଡା କୁକୁଡ଼ା ଆସେ, ଗୋଖା ସାଇରୁ ମାଛ ଆସେ । ମଝିରେ ମଝିରେ ମାଂସ ବି ଆସେ । ଏସବୁ ରାତିରେ ଆସି ଭୋଗଷେଇ ହୁଏ । ସେତେବେଳେ ତାଙ୍କର କେତେକ ବଛା ବଛା ଶିଷ୍ୟ ଥାଆନ୍ତି । କ୍ରମେ କ୍ରମେ ଏକଥା ପ୍ରଚାର ହୋଇଗଲା ; କିନ୍ତୁ ଭୟରେ ବାବାଙ୍କ ବିରୁଦ୍ଧରେ କେହି କିଛି କହିପାରୁ ନଥାନ୍ତି କାଳେ ବାବା ଅଭିଶାପ ଦେଇଦେବେ । ବୁଢ଼ା ବୁଢ଼ାମାନେ ଏକଥା ଶୁଣି କହୁଥାନ୍ତି, ଆପଣା ହସ୍ତେ ଜିହ୍ୱାଛେଦ, କେ ତାର ଅଛି ପ୍ରତିବାଦୀ, କଥାଟା କେତେଦିନ ଲୁଚିଛପାରେ ରହିବ, ନିଆଁକୁ ଯେତେ ଘୋଡ଼ାଇଲେ ବି ସେ ବାହାରିବ । ଦେଖ ବାପ, ଫଳରେ ସବୁ ବୁଝାଯିବ ।

ଅତିରି କଣ ହୋଇଛି ନା, ନିଶା ଗର୍ଜୁଛି । ଜଣେ ଭକ୍ତ ଗୋଟାଏ ମସ୍ତବଡ଼ ରୋହିମାଛ ଆଣି ବାବାଙ୍କ ପାଖରେ ପହଞ୍ଚିଲା । ମାଛକୁ ଦେଖୁ ଦେଖୁ ବାବାଙ୍କ ପାଟିରୁ ନାଳ ଗଡ଼ିଲାଣି । ମାଛ ରନ୍ଧା ହେଲା । ବାବା ଖାଲି ତରତର କରୁଥାନ୍ତି, ଜଲଦି ଜଲଦି କର । ଡେରି ହୋଇ ଯାଉଛି, ବଢ଼ିଆ ମାଛ ଝୋଳ । ଜାଗାଟା ଖାଲି ମହକି ଉଠୁଥାଏ । ବାବା ବସିଗଲେ ଭୋଜନରେ । ଠାକୁରଙ୍କ ଭୋଗ ଦେବାକୁ ବି ମନେ ନାହିଁ । ଝୋଳ ଗୋଳେଇ ମାଇଲେ ବଡ଼ ବଡ଼ ଦି ଗୁଣ୍ଡା । ଗୋଟାଏ ଗୁଣ୍ଡା ଖାଇ ଆଉ ଗୋଟାଏ ଗୁଣ୍ଡା ପାଟିରେ ଦେଇଛନ୍ତି, ଲାଗିଲା ଗୋଟାଏ ଶକ୍ତ ବଡ଼ କଣ୍ଟା ତଣ୍ଟିରେ । ବାବା ତ ଗାଁ ଗାଁ ହୋଇ ଗଡୁଛନ୍ତି । କିଏ ତାଙ୍କ ପାଖ ପଶୁଛି । ଶିଷ୍ୟମାନେ ଏ କଥା ଦେଖି ଧନରତ୍ନ ଯାହା ଥିଲା ସବୁତକ ଧରି ରାତିରେ ରାତିରେ ଚଂପଟ୍ । ଡାକ୍ତରଙ୍କୁ ଡାକିବାକୁ ଯିବ ବା କିଏ । କଥାଟା ଧରା ପଡ଼ିଗଲେ ସକାଳକୁ ମାଡ଼ ଭରଣକ ପଇସାଏ ହେବ । ବାବାଙ୍କ



ପାଟିରୁ ଧାର ଧାର ହୋଇ ଲାଳ ଗଡୁଥାଏ । ଆଖି ଖୋସି ହୋଇ ଗଲାଣି । ବାଡ଼େଇ କଚ୍ଚଡ଼ା ହୋଇ ଘରକୁ ଦୁଦର୍ଶନ କଲେଣି । ଖଲଆ ବଳଦ ଗୋଡ଼ ଛାଟିଲା ପରି ଖାଲି ଗୋଡ଼ ଛାଟୁଛନ୍ତି । ତାଙ୍କ ଗୋଡ଼ ବାଜି ଘର ଜିନଷପତ୍ର ଇଆଡ଼େ ସିଆଡ଼େ ଛିନ୍ନଛତର ହୋଇ ପଡ଼ିଲାଣି । ତାଙ୍କ ବିପଦ ବେଳକୁ କେହି ସାହାଯ୍ୟ କରିବାକୁ ନାହାଁନ୍ତି । ସଂପଦ ବେଳେ ସବେଁ ସଖା, ବିପଦେ ନ ଦଅନ୍ତି ଦେଖା ।

ସକାଳ ହେଲା ବେଳକୁ ମଠ ଖାଲି । ଶିଷ୍ୟମାନେ କେହି ନାହାନ୍ତି । କ୍ୟାପରୁଆ ଦାସ ଚିତ୍‌ଗାତ ମେଲାଇ ପଡ଼ିଛନ୍ତି । ଦେହରେ ଜୀବନ ନାହିଁ । ବୁଢ଼ା ବୁଢ଼ାମାନେ କହୁଥାନ୍ତି ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି । ଯେ ଯେପରି କାମ କରିବ, ଭଗବାନ ତା ପାଇଁ ସେହିପରି ଦଣ୍ଡ ଖଞ୍ଜି କରି ରଖିଛନ୍ତି ।

—୦—



# ବାଘ ଘରେ ମିରିଗ ମାଗ

ଏବେ ସିନା ଯୋବ୍ରା ଆଉ ଶିଖରପୁରକୁ ଏମିତ ଦେଖୁଛୁ, ପଚିଶ ଲକ୍ଷ ବର୍ଷ ତଳେ ଏ ଜାଗା ସବୁ ଏମିତ ନ ଥିଲା । ଏବେ ମଟର ପେଁ ପେଁ, ସାଇ-କେଲ ଟିଣ୍ ଟିଣ୍, ରିକ୍ସା ଟିଙ୍ଗ୍ ଟିଙ୍ଗ ଶବ୍ଦ କରି ଦିନରାତି ଚାଲିଛି । ରାତି ଅଧରେ ବି ଆମେ ନଇକୂଳେ ବୁଲୁଛୁ । ଡର ନାହିଁ କି ଭୟ ନାହିଁ । ସେତେ-ବେଳେ କିନ୍ତୁ ଅବସ୍ଥା ଅଲଗା ଥିଲା ।

ଯୋବ୍ରା ଆଉ ଶିଖରପୁର ବଡ଼ ଭୟଙ୍କର ଜାଗା ଥିଲା । ସେଠି ବାଘ ଭାଲୁ ସବୁ ସଣସଣ ହୋଇ ବୁଲୁଥିଲେ । ଯୋବ୍ରାରେ ଗୋଟିଏ ମହାବଳ ରାଜୁତି କରୁଥିଲା । ତା ନାଁ ଚଇତନ ସିଂ ମହାବଳ । ଶିଖରପୁର ବାଘରଜା ନାଁ ଥିଲା ଶତାକଟା ସିଂ ମହାବଳ । ଚଇତନ ସିଂର ମନ୍ତ୍ରୀ ଧୁମୁସ ଗଣ୍ଡା । କଟୁଆଳ ଟକଲା ଭାଲୁ, ସେନାପତି କୋଦା ଖାଁ ହାତୀ ଓ ଚାରଣ ନାଁ ଥିଲା କ୍ୟାପରୁଆ ଫେରଣ୍ଡା । ଚଇତନ ସିଂର ମନ୍ତ୍ରୀ ତାଡ଼ୁ ଗଣ୍ଡା । କଟୁଆଳ ଚଟାଚଟ୍ ଭାଲୁ, ସେନାପତି ମଜଭୁତ୍ ଖାଁ ହାତୀ, ଚାରଣ ହୁକେ ହୋ ଫେରଣ୍ଡା ।

ଦୁଇରଜା ପଙ୍ଗାତ ବସିଥାନ୍ତି । କେହି କାହା ସୀମା ଟପୁ ନ ଥାନ୍ତି । ସକାଳ ହେଲେ ମହାମଉଜରେ ମହାନଦୀରେ ଗାଧୋଇ, ଗଣ୍ଡା ଖଣ୍ଡେ କୁକୁଡ଼ା,

ଆଉ ହରଣ ଚୋରୁଆ କଣ୍ଟା ଖାଇ ଆଡ଼ାରେ ବୁଲୁଥାନ୍ତି । ରଇତନର ନଣ ହାତେ ହେଲେ ଶତାକଟାର ନଣ ଦେଢ଼ହାତ । କଳା ହେଲା କଣ କି ସେ ବଣରେ ଠେକୁଆ, ହରଣ, ବରାଡ଼, ସମ୍ବର ସଂଖ୍ୟା ଆସ୍ତେ ଆସ୍ତେ କମିବାକୁ ଲାଗିଲା । କୋଦା ଖାଁ ହାତୀ ସାଙ୍ଗକୁ ମଜଭୁତ ଝାଁ ହାତୀ । କିଏ ବା ନ ଡରବ, ହେଲେ ସେନାପତ ଦଟାଯାକ ମୋଟାବୁଦ୍ଧିଆ । ସେଥିପାଇଁ ଖାଦ୍ୟ ପଶୁଙ୍କ ଭିତରୁ ଅନେକ ବରାବର ଠକ୍କାଦେଇ ଚାଲିଯାଉଥାନ୍ତି । ଏପରିକି ବେଳେ ବେଳେ ରାଜାଙ୍କ ମଣୋହିକ ମଧ୍ୟ ଖାଦ୍ୟ ଅଭାବ ପଡ଼ଯାଏ । ଖାଦ୍ୟ ପଶୁ ଗୁଡ଼ାକ ବି ଭାରି ତରକା । ସେମାନଙ୍କର ବି ଜୀବନକୁ ଲୋଭ ; କିନ୍ତୁ ଚାରଣ କ୍ୟାପରୁଆ ଫେରଣ୍ଡା ଓ ଚାରଣ ହୁକେ ହୋ ଫେରଣ୍ଡା । ସେମାନଙ୍କ କବଳରୁ ମୁକ୍ତି ପାଇବା କାଠିକରପାଠ । କେଉଁଠି ଶିକାରଟିଏ ଦେଖିଲେ ଡାକବାଜି ଯନ୍ତ୍ରରେ ଡାକଲା ପରେ ଭୈରବୀ ରଡ଼ ଛାଡ଼ନ୍ତି । ସଙ୍ଗେ ସଙ୍ଗେ ମନ୍ତ୍ରୀ କଟୁଆଳ ହାଜର । ତେଣିକି ଭୋଜି, ନଅ ମଉଜ ।

ଥରେ ଦଳିତ ସଂପ୍ରଦାୟର ପଶୁମାନେ ଗୋଟିଏ ଗୁପ୍ତ ସଭା କଲେ । ଆଜିକାଲି ଯେଉଁଠି ଫୁଟବଲ ଖେଳ ହେଉଛି, ସେଇଠି । ଗୁଣ୍ଡୁଚିମୂଷା ଗଛ ଉପରେ ଚଢ଼ି ଚାରିଆଡ଼କୁ ଅନାଇଲା, କାଳେ କିଏ ଆସୁଥିବ । ସେଇଠି ଗୁପ୍ତ ସଭାରେ ସବୁକିଛି ଠିକ୍‌ଠାକ ହୋଇଗଲା । ତହିଁ ଆରଦିନୁ ଦେଖାଗଲା ଯୋବ୍ରାର ଖାଦ୍ୟଗୁଡ଼ିକ ଶିଖରପୁର ବଣଆଡ଼େ ପଳାଇ ଯାଉଛନ୍ତି ଓ ଶିଖରପୁର ଖାଦ୍ୟଗୁଡ଼ିକ ଯୋବ୍ରା ବଣକୁ ପଳାଇ ଆସୁଛନ୍ତି । କେହି କିଛି ବୁଝିପାରିଲେ ନାହିଁ । କଥା କଣ । ଦିନେ ରବିବାରିଆ ଛୁଟିଦିନ, ରଇତନ ସିଂର ମନ୍ତ୍ରୀ ଧୁମୁଁସ ଗଣ୍ଡା ଗୋଟାଏ ଠେକୁଆକୁ ଗୋଡ଼େଇଥାଏ । ଠେକୁଆଟି ମାଇଲା ଡିଆଁ ଶିଖରପୁର ଆଡେ । ସେତେବେଳେ ବସିଥାଏ ଶତାକଟା ସିଂର ଚଉକିଆ ହୁକେ ହୋ ଫେରଣ୍ଡା । ସେ ଯେମିତ ଦେଖିଲା ଧୁମୁଁସ ଗଣ୍ଡା ତାଙ୍କ ରାଜ୍ୟଆଡେ ଚାଲି ଆସୁଛି, ରଡ଼ ଛାଡ଼ିଲା— ହୁକେ ହୋ, ହୁକେ ହୋ । କିଏ ହୋ, ଯିଏ ହୋ, କୁଆଡ଼େ ହୋ । ଧୁମୁଁସ ଗଣ୍ଡା କହିଲା ଭାଇ, ଆମ ରାଜ୍ୟର ଗୋଟିଏ ଖାଦ୍ୟ ତୁମ ରାଜ୍ୟକୁ ଚାଲିଆସିଛି— ଏକଥା କି ହୁକେ ହୋ ଶୁଣେ । କହିଲା କଣ ହେଲା ? ତୁମ ରାଜ୍ୟର ଖାଦ୍ୟ ଆମ ରାଜ୍ୟକୁ ଆସିଛି ? ଅସମ୍ଭବ, ଏମିତ କେବେ ହୋଇନ । ଆଜି ହେବ କମିତ ? ତମେ କଣ ଭାବୁଛ ଖାଦ୍ୟ ଜନ୍ତୁ ଗୁଡ଼ାକଙ୍କର ସାଧାରଣ ଜ୍ଞାନ ମୋଟେ ନାହିଁ ? ଏସବୁ ତୁମର ଚାଲବାଜି ।

ଧୁମୁ'ସ କହିଲା ଭାଇ, ଏମିତ ଲୋକଙ୍କ କାହିଁକି, ଭଲରେ ଭଲରେ ଆମ ଖାଦ୍ୟଟି ଦେଇଦିଅ । ଆମେ ଫେରିଯିବୁ । ହଠାତ୍ ହୋ ଠୋ ଠୋ କରି ହସି ପକାଇଲା । ହଇହୋ ମନ୍ତ୍ରୀ ଭାଇ ! ତେବେ ଗୋଟିଏ କାମ କର । ତମର ଯେତେ ଖାଦ୍ୟପଶୁ ଅଛନ୍ତି, ତାଙ୍କ ଉପରେ ମୋହର ବାଡ଼େଇ ଦିଅ ଯେ, ହଠାତ୍ ଚହ୍ନା ପଡ଼ିଯିବେ । ତା ନ ହେଲେ କଳି କରି ଲାଭ ନାହିଁ । ତମେ କଳି କଲେ ଆମକୁ ବି କଳି କରି ଆସେ ।

ସଙ୍ଗେ ସଙ୍ଗେ ଶରଣାର୍ଥୀ ଠେକୁଆଙ୍କ ବାହାରପଡ଼ି କହିଲା, ଯାଁରେ ଯୋବ୍ରାବାଲା ; ଭାରି ଫୁଟାଣି ଦେଖାଉଚୁ । ଆମଭଳିଆ 'କ' ଶ୍ରେଣୀୟ ଖାଦ୍ୟ ତୁମେ କୁଆଡ଼େ ପାଇବ । ବେଶି କଥା କୁହନା । ମୁହଁ ବଢିଯିବ । ଧୁମୁ'ସକୁ ଭାରି ଅପମାନ ହେଲା । ଯାହା କହନ୍ତି କଳିଯୁଗ । ତା ନ ହେଲେ ଖାଦ୍ୟ-ଗୁଡ଼ାକ ଆମ ଉପରେ ଓଲଟି ଘୋଡା ଚଢ଼ନ୍ତେ ? ନାଃ । ସେ କଥା ହେବ ନାହିଁ । ପ୍ରତଶୋଧ ନେବାକୁ ପଡ଼ିବ ।

ତା ପରେ ହେଲା ଯୁଦ୍ଧ ଯୋଗାଡ଼ । ଗୋଟାଏ ଭଲଦିନ ଧରାଗଲା । ଠିକ୍ ଏକାଦଶୀ ଦିନ ଯୁଦ୍ଧ ଲାଗିବ । କାରଣ ଯେ ମରିବ, ସେ ସିଧା ସ୍ୱର୍ଗ ଯିବ । ଆଉ ମଧ ମଲା ସୈନ୍ୟମାନଙ୍କୁ ଲୋଭୀ ସୈନ୍ୟଗୁଡ଼ାକ ଖାଇଯିବେ ନାହିଁ ।

ମାଙ୍କଡ, କୋକିଶିଆଳୀ, ଗଧ ଯୁଦ୍ଧବାଜା ବଜାଇଲେ । ଚଢ଼େଇମାନେ ତୁରୀ ଫୁଙ୍କିଲେ । ଓଃ ସେ ଯୁଦ୍ଧକଥା କଣ କହିବା । ରାମ ରାବଣ ଯୁଦ୍ଧ ବି ଏମିତ ଭୟଙ୍କର ହୋଇ ନ ଥିବ । ଗଣ୍ଡା ହାତୀ ପଣ ପଣ ମରି ଶୋଇଲେ । ସାପଗୁଡ଼ାକ ଦଳ ଚକଟି ହୋଇ ମରିଗଲେ । ସେତେବେଳେ ତ ଡାକ୍ତର-ଖାନା ନ ଥିଲା । ଯେ ଯେଉଁଠି ମଲା ସେଇଠି । ଶବଗୁଡ଼ାକ ପଚି ଗନ୍ଧ ଛାଡ଼ିଲେ । ମଡ଼ା ପୋତାଳି ଭାଇ ଶାଗୁଣାମାନେ ବି ଲାପ୍ ଉଠାଇଲେ ନାହିଁ । ସେମାନେ ଜିଦ୍ ଧରି ବସିଲେ ଏକାଦଶୀ ଦିନ ଆମିଷ ପାଟିରେ ଦେବେ ନାହିଁ ।

ଚଇତନ ସିଂ ଓ ଶତାକଟା ସିଂ ର ପୁଅ, ନାତ, ଅଣନାତ, ପଣନାତ, କଣନାତ, ଠଣନାତ, ବଣ ନାତ୍ତି ସମସ୍ତେ ମଲେ । ଦୁଇଟା ରାଜ୍ୟ ଶୁନ୍‌ଶାନ ହୋଇଗଲା । ଏ କଥା ସମ୍ରାଟ ସିଂହେଶ୍ୱରଙ୍କ କାନରେ ଯାଇ ବାଜିଲା । ସେତେବେଳକୁ ସିଂହ ସମ୍ରାଟଙ୍କ ରାଜଧାନୀ ଥାଏ, ରାଣୀହାଟ ପୋଲପାଖରେ; ଯେଉଁଠି ହିନ୍ଦୁ ସିନେମା ଘର ହୋଇଛି । ଖବର ପାଇ ଭୀଷଣ ରାଗିଗଲେ ।



ନଜ ଭିତରେ କଳି କରି ପଶୁଏ ବଂଶନାଶ କଲେ । ସବାଙ୍କ ପଣ୍ଡିତ ଶ୍ରୀ କୃଷ୍ଣକାକ ମହାପାତ୍ରଙ୍କୁ ଡ଼କାଇଲେ । ମହାପାତ୍ରେ କହିଲେ, ହଜୁର ହତାଶ ହୁଅନ୍ତୁ ନାହିଁ । ମାଳିକା ଡାକୁଛି, ପଞ୍ଚଗ୍ରହ କୂଟ ଫଳରେ ଏମିତ ବିପ୍ରାତ ଥୋଡ଼ାଏ ଘଟିବ । ପଚିଶ ଲକ୍ଷ ବର୍ଷ ପରେ ମଣିଷ ବୋଲି ଗୋଟା ପ୍ରକାର ଜୀବ ଏ ଭାରତବର୍ଷରେ ଦେଖାଦେବେ । ତାଙ୍କ ଭିତରେ ବି ଏମିତ ଝଗଡ଼ା-ଝାଟି ହେବ । ହିନ୍ଦୁସ୍ଥାନ, ପାକିସ୍ତାନ, ଫାଙ୍କିସ୍ତାନ, କେତେ ସ୍ଥାନ ଗଢ଼ାଯିବ । ଶିଖିମନାଇ ବୋଲି ଦୁଇଜଣ ଯୁଗାନ୍ତକାରୀ ଶୟତାନ ଏ ଦେଶରେ ଜନ୍ମିବେ । ଆପଣ ବିଜ୍ଞ ଲୋକ ହୋଇ ଚିନ୍ତା କରୁଛନ୍ତି ?

ସିଂହରାଜ ମୁଣ୍ଡରେ ହାତଦେଇ କହିଲେ, ଓଃ କି କଥା ଶୁଣାଉଛ ମହାପାତ୍ରେ । ଆମର ବଂଶଧର ପୁଣି ବାଡ଼ଆପିଟା ହେବେ । କି କଥା ଶୁଣାଇଲୁ ରେ ଭାଗ୍ୟ ! କୃଷ୍ଣକାକ ନିଜ ପକେଟରୁ ଫୁଲପକା ରୁମାଲ ବାହାରି କରି ସମ୍ରାଟଙ୍କ ଆଖିରୁ ଲୁହ ପୋଛିଦେଲେ । କହିଲେ ମହାରାଜ, ଚାଲନ୍ତୁ ଦେଖିବା ବୀରଭୂମି ଯୋବ୍ରା ଓ ଶିଖରପୁର ରଣାଙ୍ଗନର ଅବସ୍ଥା କଣ ।

ଶେଷକୁ ଯୁଦ୍ଧ କ୍ଷେତ୍ରରେ ସମସ୍ତେ ପହଞ୍ଚିଲେ । ଚତାକଟା ସିଂ ଓ ଚଇତନ ସିଂ ଦ୍ୱନ୍ଦ୍ୱ ଯୁଦ୍ଧ କରି ମଲଙ୍କ ପରି ପଡ଼ିଥାନ୍ତି । ହଲଚଲ ହେବାକୁ ଶକ୍ତି

ନାହିଁ । ଗୋଟିଏ ସୁନ୍ଦର ମୃଗ ନିଜକୁ ରାଜା ବୋଲି ଘୋଷଣା କରିଛି । ସେ ତଣ୍ଟିକଟା ବିଲୁଆକୁ ଆଦେଶ ଦେଉଛି, ଘୋଷାଡ଼ି ଏ ମଡ଼ା ଦିଟାକୁ । ୟାଙ୍କ ଲାଙ୍ଗୁଡ଼କୁ ଧରି ଘୋଷାଡ଼ି । ନେଇ ଫୋପାଡ଼ି ଦିଅ ସେ ନାଳ ଭିତରେ । ଆମର ବିଜୟ ହେଲା ।

ଏକଥା ଶୁଣି ବିଲୁଆ, ଶାଗୁଣା, କାଉ, ଚୁଚୁନ୍ଦ୍ରା, ବିରାଡ଼ି, ଗଧ, କୁକୁର ଓ କୁକୁଡ଼ା ପ୍ରଭୃତି ନାଗରିକମାନେ ଏକାବେଳକେ ପାଟିକରି ଉଠିଲେ—ଜୟ ମହାରାଜା ଶ୍ରୀ ଶ୍ରୀ ଶ୍ରୀ ମିରିଗେଶ୍ୱର କୀ ଜୟ । ବୀର ସେନାପତି ବିଲୁଆ ସିଂହ କୀ ଜୟ ।

ଏହାପରେ ମହାରାଜା ଉଠି କହିଲେ ପ୍ରଜାଗଣ, ଏଣିକି ବଳ ବା ଶକ୍ତି ଦେଖି ରାଜା ବଛାଯିବେ ନାହିଁ । ସୌନ୍ଦର୍ଯ୍ୟ ଦେଖି ରାଜା ବଛାଯିବେ । ମୋ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଆପଣମାନେ ମୋତେ ସମ୍ରାଟ ପଦରେ ଅଭିଷିକ୍ତ କରିଛନ୍ତି । ସେଥିଲାଗି ଆପଣମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି । ସମସ୍ତେ ଏହାପରେ କହି ଉଠିଲେ ଇନ୍‌କିଲାବ୍, ଜିନ୍ଦାବାଦ ।

ଏ ଦୃଶ୍ୟ ଦେଖି ସିଂହେଶ୍ୱର ଆଉ କେତେ ସମୟ ରହନ୍ତେ । କୃଷ୍ଣକାକକୁ କହିଲେ ଏବେ ଆମ ଯୁଗ ଗଲା । ମୋର ଦୁଇଟି ବାହୁ ନଷ୍ଟ ହୋଇଗଲା । ଆଉ କାହାକୁ ନେଇ ରାଜ୍ୟ ଚଳାଇବି । ବର୍ତ୍ତମାନ ମୋର ବାନପ୍ରସ୍ଥ ସମୟ ଆସିଗଲା । ମହାପାତ୍ରେ ଏଥର ହିମାଳୟକୁ ଶୀଘ୍ର ଟିକଟ ଖଣ୍ଡିଏ ମୋ ପାଇଁ କାଟିଦିଅ । କୃଷ୍ଣକାକ ମହାରାଜାଙ୍କୁ ବହୁ ଧରାଧରି କରି ରାଜ୍ୟକୁ ଫେରିଗଲେ ।






ଓଧ ଓ ବଣଭୁଆ ସଙ୍ଗାତ ବସିଲେ । ବଣଭୁଆର ମା ନା କଟାଶୀ। ଦିନେ କଟାଶୀ କହିଲା, ହଇରେ ପୁଅ, ତୁ ତ ଓଧ ସାଙ୍ଗରେ ସଙ୍ଗାତ ବସିଲୁ। କାହିଁ ତାକୁ ତ ଦିନେ ଖାଇବାକୁ ଡାକିଲୁ ନାହିଁ ? ତମେ ସିନା ଦି ସଙ୍ଗାତ ମହାମଉଜରେ ବୁଲୁଛ, ହେଲେ ପୁଅଟା ଭାବିବ ଦେଖ—ମୁଁ ଏତେ ମାଛ ଆଣି ଗଦେଇ ଦେଉଛି, ସେ ମାଉସୀଟା ଏମିତି ଯେ, ଦିନେହେଲେ ନ'ତଅଣ ଛି'ଭଜା କରି ଖାଇବାକୁ ଗଣ୍ଡାଏ ଦେଲା ନାହିଁ। କଥାଟା ଭୁଆ ମନକୁ ବେଶ୍ ପାଇଲା। ସେ ଚଟ୍‌କରି ଯାଇ ସଙ୍ଗାତକୁ ଡାକିଆଣିଲା। ସେଦିନ ବିଲେଇ ମାଉସୀର ତରକାରୀ ଖାଇ ଓଧ ଖାଲି ଆନନ୍ଦରେ ହାକୁଟି ମାରୁଥାଏ। ମନେ ମନେ ଭାବୁଥାଏ—ବିଲେଇ ମାଉସୀ ପୁଣି ଏତେ ପ୍ରକାର ତରକାରି ଜାଣେ। ମାଛଭଜା, ମାଛକାଳିଆ, ମାଛ ପତରପୋଡ଼ା, ଦହିମାଛରନ୍ଧା, ମାଛବେସର ଇତ୍ୟାଦି ଇତ୍ୟାଦି। ସେହିଦିନୁ ଓଧର ମନ ଲାଗିଗଲା। ଯାହା କିଛି ରୋଜଗାର କରେ ସବୁ ମାଉସୀ ପାଖରେ ଗଦେଇ ଦିଏ। ଏଣେ ଓଧ ମା'ର ମନ ଦୁଃଖ । ପୁଅ ଯାହା ଆଣୁଛି, ସବୁ ମାଉସୀ ପାଖରେ ଗଦେଇ ଦେଉଛି। ଯଦି ରୋଜଗାରକୁ କିଛି ନ ଦେଲା, ତେବେ ପୁଅ ଜନମ କରି ଲାଭ କଣ। ହେଲେ କ'ଣ କରିବ। ପୁଅକୁ ମୁହଁ ଉପରେ କିଛି କହିପାରୁ ନ ଥାଏ।

ଦିନେ ଓଧ ମା କହିଲା, ହଇରେ ପୁଅ, ତୋ ମାଉସୀ ଭାରି ବଡ଼ିଆ। ତୋ ସଙ୍ଗାତ ବି ଭାରି ବଡ଼ିଆ ନା, କଣ ? ଓଧ ଖୁସିରେ ହଁ ମାରିଲା । ସେଇଠୁ ଓଧ

ମା କହିଲା, ହଇରେ ପୁଅ, ତୁ ଏକୁଟିଆ ମାଛ ଧରି ଧରି ତୋ ମୁହଁ ଶୋଷା ପଡ଼ିଗଲାଣି । ପାଣିରେ ବୁଡ଼ି ବୁଡ଼ି ତତେ ସରଦି ଧରି ପକେଇବଣି । ମୁଁ କୋଉଠୁ ବଇଦ ଆଣିଦେଖେଇବି । ଓଧ କହିଲା, ତୁ କେଡ଼େ ହୁଣ୍ଡିଟାଏ ଲୋ । ଓଧ ମାନଙ୍କୁ କ'ଣ ସର୍ଦ୍ଦି ଧରେ ? ସେଇଠୁ ତା ମା କହିଲା, ଗୋଟାଏ କାମ କର । ତୋ ସଙ୍ଗାତକୁ ସଙ୍ଗରେ ଧରି ମାଛ ଧରିବାକୁ ଯାଉନାହୁଁ କିଆଁ ? ସେ ଅନ୍ଧ ଛୁଆଟା ବସିକରି ଖାଉଥିବ । ତୁ ଖାଲି ଖଟି ଖଟି ହାଲିଆ ହେଉଥିବୁ । ନା ନା ସେକଥା ପଟିବ ନାହିଁ । ତୁ ଏଣିକି ସଙ୍ଗାତକୁ ସାଙ୍ଗରେ ନେଇ ଯା ।

ଓଧ ମନକୁ କଥାଟା ବେଶ୍ ପାଇଲା । ସଙ୍ଗାତ ତାକୁ ଯଦି ଟିକିଏ ସାହାଯ୍ୟ କରନ୍ତି, ତେବେ ତାଙ୍କ ରୋଜଗାର କାହିଁରେ କ'ଣ ହୁଅନ୍ତା । ଖରାଦିନପାଇଁ ସେଉଠୁ କିଛି ଶୁଖାଇ ଶୁଖୁଆ କରି ବାଉରଖିହୁଅନ୍ତା । ସେଦିନ ସଙ୍ଗାତ ଆଗରେ ମନକଥା କହୁ କହୁ କହିପକାଇଲା । ସଙ୍ଗାତ ବି ହଁ ମାରିଲା ।

ତହିଁ ଆରଦିନ ଦୁଇସଙ୍ଗାତ ବାହାରିଲେ ମାଛଧରି । ଭୁଆଁ ସିନା କହି ଦେଇଥିଲା, ପାଣି କି ଦେଖି ତା ଛାତି ଖାଲି ପଡ଼ିଲା ଉଠିଲା । ତହୁଁ ଶୃଲକ୍ କରି କହିଲା ସଙ୍ଗାତ, ତମେ ପାଣିରେ ବୁଡ଼ି ମାଛ ଧର । ମୁଁ ଏଇଠି କୂଳରେ ବସି ସବୁତକ ସାଇତି ରଖୁଛି । କଥାଟା କିନ୍ତୁ ଓଧ ମନକୁ ପାଇଲା ନାହିଁ । ସେ କହିଲା ସଙ୍ଗାତ ତମେ ଡରୁଛ କି ? ମୁଁ ପରା ଅଛି ? କିଛି ଚିନ୍ତା କରନା । ତମେ ଭାବୁଛ ପାଣିରେ ବୁଡ଼ିଲେ ଭାସିଯିବ ? ଏକଥା ଶୁଣି ଭୁଆଁ ଗାଲରେ ହାତଦେଇ ବସିଗଲା । କ'ଣ କରିବ । ପାଣିରେ ବୁଡ଼ିଲେ ତା ନାକ କାନରେ ପାଣି ପଶି ଅଣନଶ୍ୱାସୀ ହୋଇଯିବ ।

ତା ଚିନ୍ତା ଦେଖି ଓଧ କହିଲା, ସଙ୍ଗାତ କିଛି ଭାବନା କରନା । ଥରେ ପରୀକ୍ଷା କର । ଯଦି ତୁମକୁ ଖରାପ ଲାଗିବ, ତେବେ ଆଉ ଯିବ ନାହିଁ । ମୁଁ ସବୁ କାମ କରିବି । ତମେ କୂଳରେ ବସି ମାଛ ଗୋଟାଇବ । ଏଥିରେ ଅସାଧ କଣ ଅଛି କହିଲ ? ଆଉ ଏମିତି ଭୀରୁଙ୍କ ପରି ହୁଅନ୍ତି ।

ଭୀରୁ ବୋଲି କହିବାରୁ ଭୁଆଁ ରାଗିଗଲା । କ'ଣ ? ମୁଁ ଭୀରୁ ? ଇଏ ଭାବୁଛି ମୋ ଦ୍ୱାରା କିଛି ହେବ ନାହିଁ । ତହୁଁ ଚଟ୍‌କରି ପାଇକଚ୍ଛା ମାରି ବାହାରି ପଡ଼ିଲା । ଓଧ କହିଲା ନା ନା ସଙ୍ଗାତ, ସେମିତି ନୁହେଁ । ତମେ ଟିକିଏ ହାଲୁକା



ଥିବାରୁ ପାଣିରେ ଭସିଯାଇ ପାର । ଆଉ ତମ ଲଙ୍ଗୁଳକୁ ମୋ ଲଙ୍ଗୁଳ ସହିତ ଛନ୍ଦିଦେବା । ତାହେଲେ ଆମେ ପରସ୍ପରକୁ ସାହାଯ୍ୟ କରି କାମ ହାସଲ କରିପାରିବା । ଭୁଆଁ ରାଜିହେଲା । ଗୋଟାଏ ଟାଣ ଦଉଡ଼ିରେ ଦୁହିଁଙ୍କ ଲଙ୍ଗୁଳ ବନ୍ଧାହେଲା । ଦୁହେଁ ପାଣିକି ଡ଼ିଆଁ ମାରିଲେ ।

ଜାଗାଟା ମାଛଙ୍କ ପେଣ୍ଠ ଜାଗା । ଓଧର ମନ କାହିଁରେ କଣ ଖୁସ୍ । ସେ ବୁଡ଼ ବୁଡ଼ ଗୋଟାଏ ଶେଉଳ ଧରିଲା । ଶେଉଳଟା ପାଣି ତଳେ ଥିବାରୁ ତାକୁ ଖୁବ୍ ତଳକୁ ବୁଡ଼ିବାକୁ ହେଲା । ଶେଷକୁ ଯେତେବେଳେ ଉପରକୁ ଆସେ, ଦେଖେ ତ ସଙ୍ଗାତର ପେଟ କେତେଡ଼ ମୋଟ ଫୁଲିଯାଇଛି । ସଙ୍ଗାତ ଏପାଖ ସେପାଖ ହୋଇପାରୁନି । ଓଧ ଭାବିଲା ସଙ୍ଗାତ ବୋଧହୁଏ ପେଟେ ମାଛ ଲୋଭରେ ଖାଇଦେଇ ପେଟ ଫୁଲାଇ ଦେଇଛି । ଦେଖିଲା ବେଳକୁ ସଙ୍ଗାତର ନିଃଶ୍ୱାସ ବି ଚାଲୁନାହିଁ ।

ଆଉ କି ଆଏ । ସେହିଦିନୁ ଓଧ ଆଉ ବଣଭୁଆଁ ବଂଶ ଭିତରେ କଳି ଲାଗିଗଲା । ସେହିଦିନୁ କେହି କାହାରିକୁ ଭଲରେ କି ମନ୍ଦରେ ପଚାରନ୍ତି ନାହିଁ । ସାଙ୍ଗ କରିବା ପୂର୍ବରୁ ବହୁ କଥା ଚିନ୍ତା କରିବାକୁ ହୁଏ । ଏ କଥା ସେ ଦୁହିଁଙ୍କ ଭିତରୁ କାହାକୁ ଜଣା ନ ଥିଲା । ସେଥିପାଇଁ ଫଳ ହେଲା ଓଲଟା ।

———



# ମହାତ୍ମା ହେବାର ନିଶା

ପିଲାଦିନେ ମୁଁ ବଡ ମନୁଆଁ ଥିଲି । ଯାହା ମନକୁ ପାଇଗଲା, ତାହା ନିଶ୍ଚୟ କରିବି । ସେ ଯେତେ ଗାଳି ଦେଲେ ବି ନ ଶୁଣେ । ମୋତେ ଘରେ କହୁଥିଲେ ମାଙ୍କଡ । କାରଣ ମୁଁ ଖୁବ୍ ଅନୁକରଣ କରିପାରୁଥିଲି । ସେ ବଂକେଇ ବଂକେଇ ଚାଲେ ମୁଁ ତା ଚାଲିକୁ ଅନୁସରଣ କରେ । ଅନ୍ଧାରକଣା ଗୋବିନ୍ଦ ସାହୁ କିପରି ରାତରେ ଉଣ୍ଡାଳି ଉଣ୍ଡାଳି ଚାଲେ ତାକୁ ଅନୁକରଣ କରେ ।

ଦିନେ ମନ କଅଣ ହେଲା କେଜାଣି, ଭାବିଲି ମୁଁ ଯଦି ମହାତ୍ମା ଗାନ୍ଧିଙ୍କ ପରି ହୁଅନ୍ତି ତେବେ ଲୋକେ ମୋତେ କେତେ ଆଦର କରନ୍ତେ । ଖବର କାଗଜରେ ମୋ ଫଟୋ ବାହାରନ୍ତା । ଲୋକେ ଧନ୍ୟ ଧନ୍ୟ କରନ୍ତେ । ଆଉ ଏ ପାଠପଢ଼ା ଅଡ଼ୁଆ ନ ଥାନ୍ତା । ବାପା ବି ଯାଉଣୁ ଆସୁଣୁ ଗାଳି ଦେଉ ନ ଥାନ୍ତେ । ମାଷ୍ଟ୍ରେ ବି ଧମକାଉ ନ ଥାନ୍ତେ ।

ମୋର ବଡ଼ ଲୋକ ହେବାର ନିଶା ଲାଗିଗଲା ମାତ୍ର କିପରି ମହାତ୍ମା ଗାନ୍ଧି ହେବି, ମୋତେ ରାସ୍ତା ଦିଶୁ ନଥାଏ । କାହା ଆଗରେ ଏକଥା କହିବି । ସେ

ଶୁଣିବ ହସିଦେବ । ମୋର ଜଣେ ସାଙ୍ଗ ଥାଏ, ତାର ନାମ କିଶୋର । ତାକୁ ଏକଥା କହିଲି ଶୁଣ ତୁ ଟିକିଏ ମହାତ୍ମା ହେବାରେ ସାହାଯ୍ୟ କର । ମୁଁ ପରେ ତୋତେ ଜହରଲାଲ ହେବାପାଇଁ ସାହାଯ୍ୟ କରିବି । କିଶୋର ବି ଦେଖିଲା, ଜହରଲାଲ ହେଲେ ବି କମ୍ ନୁହେଁ, ସେ ମୋ ପ୍ରସ୍ତାବରେ ରାଜିହେଲା । କଥା ହେଲା ଏକଥା କାହାରିକୁ କୁହାଯିବ ନାହିଁ । ଚୁପ୍ ଚାପ୍‌ରେ କାମ ହେବ । ଫଳ ମିଳିଗଲା ପରେ କଥାଟା ପ୍ରକାଶ କରାଯିବ ।

ଦିନେ ଖୋଜୁ ଖୋଜୁ ମହାତ୍ମା ଗାନ୍ଧିଙ୍କ ଜୀବନୀଟା ହାତରେ ପଡିଗଲା । ଆକାଶର ଚାନ୍ଦ ପଡ଼ିଲେ ଯେମିତି ଲାଗନ୍ତା, ସେମିତି ଲାଗିଲା । ମନଦେଇ ବହିଟି ପଢିଲୁ । ଘରେ ପଢ଼ିଲେ କିଏ କାଳେ କଅଣ କହିବ, ସେଥିପାଇଁ ଶୁକନଦୀ କୂଳକୁ ଚାଲିଯାଉ । ଗୋଟିଏ ନିକାଞ୍ଚନ ଜାଗା ବାଛି ପଢ଼ିବାକୁ ବସିଯାଉ ।

ବହି ପଢ଼ା ହେଲା । ତା ଉପରେ ବି ଆଲୋଚନା ଯଥେଷ୍ଟ ହେଲା । କିପରି କାମରେ ଲଗାଇବାକୁ ହେବ — ହେଲା ପ୍ରଧାନ ଚିନ୍ତା ।

କିଶୋର କହିଲା, ମହାତ୍ମାଗାନ୍ଧି ବିଡ଼ି ଟାଣୁଥିଲେ । ଆମକୁ ପ୍ରଥମେ ବିଡ଼ି ଖାଇବା ଅଭ୍ୟାସ କରିବାକୁ ପଡିବ । ଦିନେ ସଂଜବେଳେ ଅଜାଙ୍କ ଶୋଇଲା ଘରେ ପଶି ତାଙ୍କ ତକିଆତଳୁ ବିଡ଼ିବାଟା ଆଣି ତା ଭିତରୁ ଦୁଇ ଚାରିଟା ବିଡ଼ି ବାହାର କରି ଆଣିଲି । କିଶୋର ମଧ୍ୟ ଏକ ମହତ୍ କାର୍ଯ୍ୟରେ ମୋତେ ସାହାଯ୍ୟ ଦେବାକୁ ଆଗେଇ ଆସିଲା ମାତ୍ର ମୋ ବିଡ଼ିଖାଇବା ଢଙ୍ଗ ଦେଖି ସେ ହସି ହସି ଗଡିଗଲା । କହିଲା, ମଫସଲିଆଟା କିରେ, ଧୂଆଁକୁ ଭିତରକୁ ଟାଣି ନେ, ତା କଥାରେପଡି ଟାଣିଦେଲି ସୋଟକାଏ । ଆଉ କହିଁ ଯିବ । ଧୂଆଁ ତାଳୁକୁ ଉଠିଗଲା, କାଶି କାଶି ପଡିଗଲି । କିଶୋର ମୋତେ ସାହସ ଦେଇ କହିଲା ଚିନ୍ତା କରନା ଯେ କୌଣସି ଭଲ କାମରେ ହାତ ଦେଲେ କେତେ କଷ୍ଟ ସହିବାକୁ ପଡିବ ।

ଆଗେଇ ବି ଗଲି । ଦିନେ ବାପାଙ୍କ ହାତବାକ୍ସରୁ ପାଞ୍ଚ ଟଙ୍କା ଚୋରି କଲି । ଆଉ ଦିନେ ମା'ଙ୍କର ହାରଟା ବାକ୍ସରୁ କାଢ଼ି ଆଣି କିଶୋରକୁ ଦେଲି । କିଶୋର ତାକୁ କେଉଁଠି ବିକି ଥୋଡ଼ାଏ ଟଙ୍କା ଆଣିଲା । ସେହି ଟଙ୍କାରେ



ମଦନ ଦୋକାନକୁ ଯାଇ କୁକୁଡ଼ା ମାଂସ ଖାଇଲୁ । ମଦନ ଦୋକାନ ପାଖରେ ନିଶା ଦୋକାନରୁ ନିଶା କିଣି ପିଇଲୁ । ମହାତ୍ମାଗାନ୍ଧି ଶ୍ରବଣକୁମାର ନାଟକ ଦେଖିଥିଲେ । ଆମେ ଶ୍ରବଣକୁମାର ନାଟକ କେଉଁଠୁ ଦେଖିବୁ । କିଶୋର କଥା ଅନୁସାରେ ସିନେମା ଦେଖିବାକୁ ଗଲୁ । ଛି ଏଗୁଡ଼ା କି ଚଳ ! ଭାରି ଖରାପ ଲାଗିଲା । କିଶୋର ସାହସ ଦେଉଥାଏ । ଚିନ୍ତା କରନା, ଆସ୍ତେ ଆସ୍ତେ ଦେହସୁହା ହୋଇଯିବ । ମହାତ୍ମା ହେବା ବାଟରେ ଯେ ଆମେ କେତେ ଆଗେଇ ଗଲୁଣି, ତାହା ସାଧାରଣ ଲୋକେ ଜାଣିବେ କିପରି ? ମନେ ମନେ ଭାରି ଖୁସି ହେଉଥାଏ ।

ଏହା ଭିତରେ ଟଙ୍କା ସରିଗଲା । କିଶୋର କହିଲା, ହେ ଆଉ ଟଙ୍କା ବନ୍ଦୋବସ୍ତ କର । ନ ହେଲେ କାମଟା ଅଧା ରହିଯିବ । ଆଉ କୁଆଡୁ ଟଙ୍କା

ଆଶିବ । ମୁଣ୍ଡ ଘୁଟରଇଗଲା । ପୁଣି ଗୋଟାଏ ଭଲ କାମରେ ଚୂଲିଛି । ହଠାତ୍ ଗୋଟାଏ କଥା ମନେ ପଡ଼ିଗଲା — ମହାତ୍ମାଗାନ୍ଧି ତାଙ୍କ ଦୋଷ ସ୍ୱୀକାର କରୁଥିଲେ ତାଙ୍କ ବାପାଙ୍କ ଆଗରେ । ଆରେ ! କିଶୋର ତ ଏ କଥାଟା କହିଲା ନାହିଁ, ମୁଁ ଏ କାମଟା କିଶୋରକୁ ନ ଜଣାଇ ନିଜେ କରି ବାହାବା ନେବି ଭାବି ବାପାଙ୍କ ପାଖକୁ ଗଲି । ଛାତି ଖାଲି ଉଠୁଥାଏ ପଡୁଥାଏ । ଖାଲି ଲଙ୍ଗପଙ୍ଗ ହେଉଥାଏ । ବାପା ମୋତେ ଦେଖିପାରି ପଚାରିଲେ କଅଣ କିରେ ? ମୁଁ ଆଉ କଅଣ କହିବି । ଯାହା ଯାହା ଭାବିଆସିଥିଲି ସବୁ ଭୁଲିଗଲି । ପାଟି ଅଠା ଅଠା ହୋଇଆସୁଥାଏ । ଶେଷକୁ ବଳ ଖଟିକରି କହିଲି, ବାପା ମୋର ଦୋଷ ହୋଇଛି । ମୁଁ ଚୋରି କରିଛି । ଏତିକି କହୁଛି କାନମୂଳ ଝାଁ ଝାଁ ହୋଇଗଲା । ସେଠି ବସିପଡ଼ିଲି । ବାପା କିଛି କହୁନଥାନ୍ତି । ତାଙ୍କ ମୁହଁକୁ ବି ଅନାଇବାକୁ ସାହସ ହେଉନଥାଏ । ଭାବିଲି ବାପା ଆସି କୋଳ କରିବେ । ଅପେକ୍ଷା କରିଥାଏ । କେତେବେଳେ ବାପା ଆସିବେ । ମାତ୍ର ବାପା ଆସୁ-ନାହାନ୍ତି କାହିଁକି ?

ହଠାତ୍ ପାଇଁ କରି ବସିଗଲା ଗୋଟିଏ ପାହାର । ଚିତ୍କାର କରି ଉଠିଲି । ମା ଆସି ମୋତେ ଧରିନେଲେ । ନ ହେଲେ ସେଦିନ ମୁଁ ପ୍ରାଣ ପାଇ ନଥାନ୍ତି ।

ଖାଲି କାନ୍ଦୁଥାଏ । ମା ବୁଝାଉଥାନ୍ତି । ଛି ବାପ, ଏପରି କଲୁ । ମୋ ହାରଟା ବି ନେଲୁ । ମୁଁ ତାକୁ ୟାକୁ ଦୋଷ ଦେଉଛି । ହାରଲାଗି ଦୁଇଦିନ ଉପବାସ ରହିଲି । ତୋର ବାପର ମୋର ୮ଦିନ ହେଲା କଥାବାର୍ତ୍ତା ନାହିଁ ଇତ୍ୟାଦି କହି ଚାଲିଥାନ୍ତି । ମୁଁ ତାଙ୍କ କୋଳରେ ମୁଣ୍ଡ ଲୁଚାଇ କାନ୍ଦୁଥାଏ ।

ସମସ୍ତେ ଛି ଛାକର କଲେ । ସ୍କୁଲକୁ ଯିବାକୁ ଲାଜ ମାଡ଼ିଲା । ଆମ ସ୍କୁଲର ପ୍ରଧାନ ଶିକ୍ଷକ କହିଲେ, କୁମାରଟା ଏତେ ଭଲ ପିଲା ସେ କିମିତି ଖରାପ ହୋଇଯିବ, ଆଶା କରିନଥିଲି । ସାଙ୍ଗପିଲାମାନେ ମୁ ରୁକିହସା ଦେଉଥାନ୍ତି । କେହି କେହି ସିଧା କହି ଦେଉଥାନ୍ତି । ସମସ୍ତେ କହିଲେ ବଂଶ ବୁଡ଼ିବା ବେଳକୁ କୁଳାଙ୍ଗାର ପୁଅ ଜନ୍ମହେଲା । ମାତ୍ର ମୁଁ ବୁଝି ପାରୁ ନଥାଏ ମୋର ଦୋଷ କେଉଁଠି !

ମାଏ ଯେତେବେଳେ ଦେଖିଲି, କିଶୋର ମୋ ସାଙ୍ଗରେ ଆଉ ମିଶୁ ନାହିଁ, ସେ ବି ଅନ୍ୟ ସାଙ୍ଗରେ ମିଶି ମୋତେ ଥଟ୍ଟା କରିବାରେ ଲାଗିଲାଣି ସେତେବେଳେ ଭାରି ଖରାପ ଲାଗିଲା । ଏହା ଭିତରେ ବାପା ମୋର ଗତିବିଧି ଲକ୍ଷ୍ୟ କରୁଥାଆନ୍ତି । ପାଖରେ ବସାଇ ପ୍ରତିଦିନ ବୁଝାଉଥାନ୍ତି । ଦୋଷୀଙ୍କ ପରି ମୁଣ୍ଡକୁ ହାଣିଦେଇ ସବୁ ଶୁଣୁଥାଏ ।

କିଶୋର ସେହିଦିନୁ ମୋ ସାଙ୍ଗ ହେଲାନାହିଁ । ବାପା ଜାଣିଲେ କି କଅଣ ଆଉ ତା ସାଙ୍ଗରେ ନ ମିଶିବାକୁ ତାଗିଦ କରିଦେଲେ । କିଶୋର ସାଙ୍ଗ ଛାଡ଼ିବା ସଙ୍ଗେ ସଙ୍ଗେ ମହାତ୍ମା ହେବାର ନିଶା ଛାଡ଼ି ବି ଗଲା ।

